# ସାରସ୍ୱତ ସଂଚୟନ

## (କବିତା ବିଭାଗ)

ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ
ଆଂଶିକ ଅନୁଦାନରେ ପ୍ରକାଶିତ ।

ଲେଖକ ଏବଂ ପ୍ରକାଶକ : **ଭୋଳାନାଥ ରାଉତ**
ସା- ବଡ଼ଚଣା
ପୋ:ଅ- ବଡ଼ଚଣା
ଜି- ଯାଜପୁର

ପ୍ରକାଶ କାଳ : ୨୦୦୨

ମୁଦ୍ରଣ ସଂଖ୍ୟା : ୧୦୦୦

ମୁଦ୍ରଣ -
**ପ୍ରିଣ୍ଟିଂ ପଏଣ୍ଟ, ଚଣ୍ଡୀଖୋଲ**

ମୂଲ୍ୟ : ୨୧/-(ଏକୋଇଶ ଟଙ୍କା ମାତ୍ର)

## ସ୍ୱର୍ଗତଃ ପିଉସୀମା'ଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ

*ପୂଜନୀୟା ମା,*

ସ୍ୱର୍ଗତାଃ ହୀରାଦେବୀ । ତୁମେ ମୋତେ ଦୁନିଆ ଦୁଆରେ ପରିଚିତ କରାଇଛ । ଜନ୍ମରୁ ଜନନୀ ସମ ମା' ଛେଉଣ୍ଡ ସନ୍ତାନର ସେବା କରିଛ । ଜୀବନରେ ମୁଁ ତୁମର ସେହି ଋଣ ପରିଶୋଧ କରି ପାରିନାହିଁ । ତେଣୁ ଏହି କବିତା ସଂକଳନ ତଥା ସାରସ୍ୱତ ସଞ୍ଚୟନକୁ ତୁମରି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛି । ତୁମେ ସ୍ୱର୍ଗରେ ଥାଇ କଲ୍ୟାଣ କର ମୋର ଲେଖନୀ ତୁମର ଯଶଗାନ କରୁଥାଉ ।

ଏତିକି ମାଗୁଣି ।। ଇତି ।।

*ତୁମର ସ୍ନେହର*

**"ଭୋଳାନାଥ"**

# .... ଅଭିମତ ....

ଭୋଳାନାଥ ବାବୁ ଜଣେ ଗୀତି-କବି । ଏହି ସଂକଳନରେ ସ୍ଥାନିତ ତାହାଙ୍କ କବିତାଗୁଛ ମନ୍ମୟ-କବିତା । ରସ, ରାଗ, ସ୍ୱର, ଅଳଙ୍କାର ଓ ପ୍ରମାଣଯୁକ୍ତ ମଧୁରାକ୍ଷର ବିମଣ୍ଡିତ ପଦ ହିଁ ଗୀତି-କବିତା । ସ୍ରଷ୍ଟାର ସର୍ଜନାତ୍ମକ ମେଧା ପ୍ରକାଶିତ ହୋଇଛି ଏହି କବିତା ଗୁଡ଼ିକରେ । କବି ପ୍ରାଣର ଆବେଗ ଓ କଳ୍ପନା ବିଳାସ ହୃଦୟକୁ ମନ୍ଥିତ କରି ଉଚ୍ଚାରିତ ହୋଇଛି । ପଦଲାଳିତ୍ୟ ମଧ୍ୟରେ ଏହା ନିପୁଣତାର ସହ ଅନୁରଣିତ । ଅନୁଭୂତି ସହିତ କଳ୍ପନା-ବିଳାସ ବିକଶିତ ହେବା ପାଇଁ କବିଙ୍କର ଭାବ-ସଂବେଗ, ଶବ୍ଦ-ସଂଚୟନ, ଶବ୍ଦ-ମନୋନୟନ ଆବଶ୍ୟକ ହୁଏ । ଏହା ହିଁ କବିତ୍ୱ ଓ କବି-ଶକ୍ତି । ଏହା ମେଧା । କବିଙ୍କ ମନୋଭୂମିରେ ବ୍ୟଥା ବେଦନା ବାସ୍ତବତାର ରୂକ୍ଷ କଠୋର ରୂପ ଆତ୍ମପ୍ରକାଶ କରିଛି କବିଙ୍କ କାବ୍ୟ-ବିଭାରେ ।

ଜନ୍ମଭୂମି କବିର ଜନନୀ-ସ୍ୱର୍ଗାଦପି ଗରୀୟସୀ । ମାଟି ମା'ର ସୋହାଗ, ସରାଗ ଓ ମମତାକୁ କବି ଭୁଲି ପାରିନାହାନ୍ତି । ଗାଁ ମାଟିରେ ସେ ଜୀବନ ଅତିପାତ କରିଆସୁଛନ୍ତି । ବନ୍ୟା, ମରୁଡ଼ି ଓ ମହାବାତ୍ୟାରେ ତାହାଙ୍କ ଗାଁ ଉଜୁଡ଼ି ଯାଇଛି । ବଡ଼ ଭଉଣୀର ମୃତ୍ୟୁରେ କବି ବ୍ୟଥିତ ଓ ମ୍ରିୟମାଣ । ପଲ୍ଲୀବଧୂ ପ୍ରତୀକ୍ଷା କରେ ତା'ର ବିଦେଶୀ ପ୍ରିୟକୁ । ଶାଶୁନଣନ୍ଦଙ୍କ ଗଞ୍ଜଣା, ସାହି ପଡ଼ୋଶୀଙ୍କ ଟାହିଟାପରାରୁ ରକ୍ଷା ପାଇବା ପାଇଁ ସେ ଆର୍ତ୍ତତ୍ରାଣଙ୍କୁ ଡ଼ାକେ । ସନ୍ତ୍ରାସବାଦ ଓ ସମାଜବାଦ ନାମରେ ଭୋଗବାଦକୁ ଲକ୍ଷ୍ୟ କରି କବି ମୂହ୍ୟମାନ ।

କବି ଜଣେ ସମାଜସେବୀ ଓ ଖାଣ୍ଟି ଓଡ଼ିଆଟିଏ । ସହଜ, ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରି କବି ଆଦର୍ଶବାଦୀ । ଓଡ଼ିଶା ତଥା ଓଡ଼ିଆର ଗୌରବାବହ ଐତିହ୍ୟକୁ ସେ କେତେକ କବିତାରେ ସ୍ଥାନିତ କରିଛନ୍ତି । ଅଦିନରେ ତାହାଙ୍କ ଅତୀତ ପ୍ରଣୟ-ସ୍ମୃତି ମୁଞ୍ଜରିତ । ଜଣେ ରୋମାଣ୍ଟିକ କବି-ଭାବନାର ସ୍ପର୍ଶ ପ୍ରୀତି-କବିତାମାନଙ୍କରେ ପ୍ରକାଶିତ । ଦୁର୍ଗାଙ୍କର ଆବାହନ କିମ୍ବା ନବବର୍ଷର ସ୍ୱାଗତିକା ମଧ୍ୟରେ କବି ସାଂପ୍ରତିକ ଦୁରବସ୍ଥାର ଅବସାନ ପାଇଁ କାମନା କରିଛନ୍ତି । ପରିବେଶ ସୁରକ୍ଷା ପାଇଁ ସେ ଜନସମାଜକୁ ଆହ୍ୱାନ କରିଛନ୍ତି । ବୟସ ତାଙ୍କର ଗଡ଼ିଯାଉଛି-ତଥାପି କବିଙ୍କ ମାନସ-ମୟୂରୀ ତଥାପି ନୃତ୍ୟରତ ।

ବେଳେ ବେଳେ କବିଙ୍କର ଭାବ-ଗମ୍ଭୀର ରୁଦ୍ର ରୂପ କବିତାରେ ପ୍ରକାଶ ପାଇଛି । 'ମୁଁ'ର ସ୍ୱରୂପ ନିର୍ଣ୍ଣୀତ ହୋଇପାରିନି । ସ୍ୱପ୍ନ, ବାସ୍ତବ ଓ ଆଦର୍ଶର ତେମୁହାଣି ଛକିରେ ଛିଡ଼ା ହୋଇ ସେ ପଥ ଖୋଜିଛନ୍ତି— ଜୀବନର ବଡ଼ଦାଣ୍ଡରୁ ସ୍ୱର୍ଗଦ୍ୱାର ନୁହେଁ, ଜାହ୍ନବୀ ତୀର ପର୍ଯ୍ୟନ୍ତ । କବି ଜୀବନ ବିଶ୍ୱାସୀ, ବଡ଼ ଭାବ-ସଂଯମୀ । କବିଙ୍କ ଲେଖନୀରୁ ଅମୃତ ଝରୁଥାଉ । ତାହାଙ୍କ କବି-ପ୍ରତିଭାର ଚଲାପଥରେ ଫୁଲ ବରଷୁ ।

*ଜଗନ୍ନାଥେ ତାଙ୍କର ମଙ୍ଗଳ କରନ୍ତୁ । ବାସ୍ - ଏତିକି । ।। ଇତି ।।*

**ଡ଼ଃ କୁଳମଣି ରାଉତ**

ବୈରୀ, ଯାଜପୁର, ପି.ନଂ.-୭୫୪୦୮୨

ତା : ୧୧-୨୧-୦୨

# ସୂଚୀ



# ଉଦୀରଣ

ସଂପ୍ରତି ଓଡ଼ିଶାର ସୀମା, ଓଡ଼ିଆ ଭାଷା ସଂସ୍କୃତି, ସଂକଟମୟ ପଥରେ ଗତି କରୁଥିବା ବେଳେ, ସାରସ୍ୱତ ସାଧନା ଭ୍ରଷ୍ଟାଚାରୀମାନଙ୍କ ନିର୍ଯାତନାରେ ଅଣନିଃଶ୍ୱାସି ହୋଇ ପଡୁଥିବା ବେଳେ ଦୀର୍ଘ ଚାଳିଶ ବର୍ଷର ସହସ୍ରାଧିକ ସଂଗୀତ ଓ କବିତା ମଧରୁ ପ୍ରକାଶିତ କିୟଦଂଶ କବିତା ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ମନେ କରିବି । ।। ଇତି ।।

ବିନୀତ

ଲେଖକ : **ଶ୍ରୀ ଭୋଳାନାଥ**

# ଜନନୀ ଜନ୍ମଭୂଇଁ

ଏଇ ଆମ ଜନ୍ମଭୂଇଁ, ପୁଣ୍ୟ ମମତାମୟୀ
ବୀର ପ୍ରସବିନୀ, ଚିର ଆହ୍ଲାଦିନୀ–
ଚିନ୍ମୟୀ କାଳଜୟୀ ।।

ଯାହାର ଚରଣ ଛୁଇଁ, ପବିତ୍ର ଶପଥ ନେଇ
ଆମ ଗଣତନ୍ତ୍ର ସଂଗ୍ରାମୀ ରଥ–
ତ୍ରିରଙ୍ଗା ଉଠିଛି ଚେଇଁ ।।

ଉତ୍ତର ଦାୟାଦେ ଚାହିଁ, ପୂର୍ବସୂରୀ ଗଲେ କହି,
ଜାଗିବେ ଭାରତ ସନ୍ତାନ ସ୍ୱତଃ–
ବିଶ୍ୱମାନବ ପାଇଁ ।।

ଅଳସ ବିଳାସ ଭୁଲି ଅନ୍ଧାର ବୁକ୍କୁଚିରି,
ଜାଳିବେ ଜ୍ଞାନର ଦୀପ୍ତ ମଶାଲ–
ଜାତିର ଉନ୍ନତି ପାଇଁ ।।

ଜାତୀୟ ଗଗନେ ପାଜି, ବୈରୀ ଉଠିଲେ ଗର୍ଜି,
ବଦଲା ନନେଇ ଛାଡ଼ିବେନି କେହି –
ପରମାଣୁ ଯୁଗ ଏହି ।।

ଆସିଛି ଆଜି ସେଦିନ, କରିବାକୁ ଅରିଶୂନ୍ୟ,
ସମ୍ମୁଖ ସଂଗ୍ରାମ କରନ୍ତି ସନ୍ତାନ –
ଶତ୍ରୁମଥା ଯାଏ ନଇଁ ।।

ବନ୍ଦେ ମାତରମ୍ ଗାନ, ବଢ଼ାଏ କଦମ୍ ତାନ,
ଦେଶର ସୀମାନ୍ତେ କାରଗିଲ୍ ପଥେ–
ଅଭିଯାନ ଶେଷ ନାହିଁ ।।

ତୁଙ୍ଗ ତୁଷାର ଗିରି-ଆକର୍ଷିଲା ହାତଠାରି,
ଜାଗିଲେ ଜବାନ୍ ଶତ୍ରୁଦମନ-
ବିଜୟ କେତନ ଚାହିଁ ।।

ପଡ଼ୋଶୀଙ୍କି ସନମାନ ଦେବାସିନା ଆମ ଧର୍ମ,
କିନ୍ତୁ ଦୁର୍ବଳତା ନୁହେଁ ଏହା ବାର୍ତ୍ତା-
ବିଶ୍ୱାସ ଘାତକ ପାଇଁ ।।

ଜାତୀୟ ଜନନୀ କୋଳ, ଆକୁମାରୀ ହିମାଚଳ
ଆତ୍ମୀୟତା ଭରେ ବିଶ୍ୱ ବୁକୁରେ-
ତା ସମାନ ନାହିଁ କେହି ।।

ଗାଇତାର ଜୟଗାନ, ତା ସେବାରେ ଦେବା ମନ
ଆମେ ଗରୀୟାନ ବୀର ବର୍ଷୀୟାନ୍-
ପଛଘୁଞ୍ଚା ଦେବା ନାହିଁ ।।

ଯେତେ ମାନମନାନ୍ତର ନିର୍ବାଚନ ଇସ୍ତାହାର
ଏ ଦଳ ସେ ଦଳ କ୍ଷମତା କନ୍ଦଳ
ଭୁଲିଯିବା ଦେଶ ପାଇଁ ।



# ଘେନ ଆବାହନୀ ମାଗୋ ମହିଷା ମର୍ଦ୍ଦିନୀ

ଆକାଶରେ ଭସା ବାଦଲର ରୋଷଣୀ ସଜେଇ,
ଧରଣୀରେ ବିନ୍ଦୁ ବିନ୍ଦୁ ଶିଶିର ଭିଜେଇ,
ପୂଜା ପୀଠେ ଶଙ୍ଖ ସାହାନାଇ, ଦୀର୍ଘ ସ୍ୱରେ ବଜେଇ ବଜେଇ,
ଆସିବକି ଦେବୀ ଦୁର୍ଗେ ମମତାର ବିତରଣେ-
ଦେବାପାଇଁ ସନ୍ତାନର ଅନ୍ତର ରଂଜେଇ ।୧।

ଅହିଂସା ଭୂଇଁରେ ଆଜି ହିଂସାର ତାଣ୍ଡବ, ସୀମାନ୍ତରେ ବର୍ଷୁଅଛି ଗୁଳି ।
ଅଭ୍ୟନ୍ତରେ ପେଶାଦାରୀ କ୍ଷମତା ଲାଳସା, କୂଟନୀତି ସ୍ୱର ତୋଳି ତୋଳି,
ଅନଗ୍ରସର ଶିଶୁର କୋମଳ ମତିରେ, ଭବିଷ୍ୟତ ସଂକଟ ସଂଚାରି,
ଅନୁକୂଳ ପଥ ସବୁ ଦେଇଛି, ହଜେଇ, ବିଫଳତା ଗ୍ଲାନି ମଧ ଦେଇ,
ଆସିବି କି ଜନନୀ ଗୋ-ବାତ୍ସଲ୍ୟ ମମତାମୟୀ-
ଦେବତା ସଂଦେଶ ଦେବ ସନ୍ତାନେ ଚେତାଇ ।୨।

ସନ୍ଦେହର ଧୂମକେତୁ ବିଛେଇଛି ଅବିଶ୍ୱାସ ଜାଲ
ମମତାର ବିନିମୟ ବୀଭତ୍ସତା ଅମା ଅନ୍ଧକାର
ହତାଶା ବିକ୍ଷୋଭ ଏବଂ ଅଧିକାର ସାବ୍ୟସ୍ତର କ୍ରୁର ପଟୁଆର
ଏକତାର ଅଭାବରେ ସଂହତି ସମତା, ଅବଲୁପ୍ତ ଦୂରେ ବହୁ ଦୂରେ
ସଂକଟର ଶେଷ ପାବଚ୍ଚରେ, ମୀମାଂସାର ଡିଣ୍ଡିମ ବଜେଇ-
ଆସିବକି ଭବାନୀ ଗୋ ବିଶ୍ୱ ଦରବାରେ---
ମର୍ମନ୍ତୁଦ ବିଭୀଷିକା ଦେବାକୁ ହଜେଇ ।୩।

ଭାରତର କୋଣେ ଅନୁ-କୋଣେ, ଦିଗହଜା ଅଶାନ୍ତିର ଝଡ଼ ।
ଅଭୁକ୍ଷୁର ଆର୍ତ୍ତନାଦ ଅବିଶ୍ରାନ୍ତ ଉଗ୍ରପନ୍ଥୀ ଭିଡ଼ ।
ଜାତିର ମସ୍ତକେ ଲଦା ବିବାଦର ଅଳୀକ ପାହାଡ଼ ।।
ଅଭ୍ୟନ୍ତରୁ ଶାନ୍ତି ମୈତ୍ରୀ ଦୀପାଳି ଜଳେଇ-
ଆସିବ କି ମହାମାୟା ଶୃଙ୍ଖଳାର ଆଲୋକ ଦେଖାଇ
ବୁକୁ ଫଟା କରୁଣ ଚିତ୍‌କାର ସବୁ, ଦେବାକୁ ଦୂରେଇ ।୪।
ଧରାବୁକେ ତବ ଆଗମନେ, ଖେଳିଯାଉ ଉଷାର ଆଲୋକ
ବିଶ୍ୱ ସନ୍ତାନ ବୁକୁରେ ଜାଗିଉଠୁ ନବୀନ ପୁଲକ
ରଣାଙ୍ଗନେ ହସି ଉଠୁ ତବ ଅସିର ଝଲକ
ଗର୍ବ ଦମ୍ଭ ଅହଂକାରୀ ଦାନବର ବିନାଶନେ-
ଆସ ମାଗୋ ଶକ୍ତି ମୟୀ ଚିନ୍ମୟୀ ଅମ୍ବିକେ ।
ବିଜୟର ଟୀକା ଦିଅ ସନ୍ତାନେ ପିନ୍ଧେଇ ।୫।



# ମା' ମାଟି ମମତା

ଜନନୀ ମୋର ଜନମ ଭୂମି, ମୁଁ ତାର ଟିକି ଛୁଆ ।
ଜନମ ବେଳେ ତା କୋଳଚୁମି, କାନ୍ଦିଛି କୁଆଁ କୁଆଁ ।୦।
ଆଶ୍ରାଧରି ଶିଖିଛି ଚାଲି, ଖେଳିଛି ଗାଆଁ ଦାଣ୍ଡରେ ଧୂଳି
ସହିଛି ସେ ମୋ ସବୁ ଅର୍ଦ୍ଦଳି, କରିଛି ଅଳି ଦୋଳିରେ ଝୁଲି
ଶିଖେଇଛି ସେ ନିଜର ବୋଲି ଆପଣା ବାପା ମାଆ- ।୧।
ଜନନୀ ମୋର ଜନ୍ମଭୂମି----------------------
ବୁଲିଛି ନିତି ସାଥି ମେଳରେ, ନଈ କୂଳରେ ତୋଟା ମାଳରେ
ପଢ଼ିଛି ପାଠ-ଚାଟଶାଳୀରେ ଖାଇ ଶିଖିଛି ଛୋଟ ଥାଳିରେ
ଭୁଲି ହୁଏନା ଯାହା ନାଁ-ସେହି ମୋ ପଲ୍ଲୀ ଗାଆଁ ।୨।
ଜନନୀ ମୋର ଜନ୍ମଭୂମି----------------------
ପାଇଛି କେତେ ସ୍ନେହ ଆଦର ଗାଇଛି କଣ୍ଠେ ତାହାରି ସ୍ୱର
ଗାଁ ମାଟିରେ ତୋଳିଛି ଘର ଜୀବନ ସାରା ଋଣୀ ମୁଁ ତାର୍
ହସ ଖୁସିର ସଂସାର ମୋର କେତେ ଯେ ମନ ଛୁଆଁ ।୩।
ଜନନୀ ମୋର ଜନ୍ମଭୂମି----------------------
ତାହାରି ଦାନ୍ ଜଳ ପବନ ଗଢ଼ିଛି ମୋର ଦେହ ପରାଣ
ହେବି କିଷାନ ଅବା ଯବାନ ରଖିବି ମାଆ ମାନ ସମ୍ମାନ
ରହିଛି ମନେ ତା କୋଳେ ଦିନେ ଜଳିବ ମୋ ଜୁଇ ନିଆଁ ।୪।
ଜନନୀ ମୋର ଜନ୍ମଭୂମି----------------------



# ଆଶାର ଆଲୋକ ଦିଅ ମା'-ଜାଳି

ସନ୍ତାନ ଆଶାର ଆଲୋ‍ ଶାଲ ମାଆ ତୁମେ ଦିଅ ଜାଳି
ସଂପ୍ରତି ଭାଷାର ଅମା ଅନ୍ଧକାରେ ସେ ହେବ ପଥ ସଂଖାଳି ।୦।

ଜଗାଇଛ ଯେଉଁ ଅମୀୟ ପୁଲକ ସହୃଦୟ ସଂକଳନେ ।
ମୃଗତୃଷ୍ଣାର ପଥେ ମର୍ତ୍ତ୍ୟଲୋକ ଧାଇଁବେନି କଦାଚନେ ।
ଆତ୍ମ ବିଭୋର ମମତ୍ୱ ଝଙ୍କାର ସଂସାରେ ଯାଉ ଖେଳି ।୧।

ତୁମ ପଦେ ଭକ୍ତି ସଂହତି ଦୀପ୍ତି ରହିଥାଉ ଅମଳିନ
ସେହି ଯେ ଶାନ୍ତି ସେହି ବି ତୃପ୍ତି ଅନୁଭବ ଚିରନ୍ତନ
ସାରସ୍ୱତ କୀର୍ତ୍ତି ଶ୍ରଦ୍ଧାଭରେ ଚିନ୍ତି ପୋଛି ଦେବୁ ମାୟା ଧୂଳି ।୨।

ଉଜ୍ଜ୍ୱଳ ଆଲୋକ ଚେତନାରେ ସତ୍ୟ ହୋଇଉଠୁ ଉଦ୍ଭାସିତ
ତମସାର ବୁକୁ ହେଉ ବିଦୂରିତ ଜଡ଼ ହେଉ ଜାଗରିତ
ଚିର ଜ୍ୟୋତିର୍ମୟୀ ମାଆଗୋ ଚିନ୍ମୟୀ ରଖ ସୃଜନୀୟ ଅଳି ।୩।

ଆଶାୟୀ ଜୀବନ ଯଜ୍ଞବେଦୀରେ ମା-ତୁମେ ବିରାଜିତା
କାବ୍ୟ ଜଗତର ଭାବ ଭୂମି ପରେ ଜଗାଇ ଦିଅଗୋ ଆସ୍ଥା
ଶୁଭ୍ର ଶତଦଳେ ଷୋଳ ଉପଚାରେ ସାଜିଛି ମୋ ଅର୍ଘ୍ୟ ଥାଳି ।୪।

ସନ୍ତାନ ଆଶାର ଆଲୋକ ମଶାଲ ମା' ତୁମେ ଦିଅ ଜାଳି—



# ଜାହ୍ନବୀ ତୀରେ

କୀଳ କଲ୍ଲୋଳିନୀ ଚିରସ୍ରୋତା-
ପୂଣ୍ୟତୋୟା ଜାହ୍ନବୀର ତୀରେ
ସ୍ନାହାନ ତର୍ପଣ ଅନୁଚିନ୍ତା-ଜାଗେ ତ୍ରିସଂଧ୍ୟାରେ, ସ୍ୱୀୟ ପିତୃ ଉଦ୍ଦେଶ୍ୟରେ ।
କୁଳଗୋତ୍ର ଉଚ୍ଚାରଣେ ଶୁଦ୍ଧି ଶ୍ରାଦ୍ଧ ବୈଦିକ ବ୍ୟବସ୍ଥା
କିନ୍ତୁ ସୁରନଦୀ ସମ୍ମିଳନେ, ସ୍ୱୟଂ ସିଦ୍ଧି ସଫଳତା ସ୍ୱର୍ଗୀୟ ସର୍ବଥା ॥
ସାଧୁ ସଂଗମ ସଜ୍ଜନ ସେବା ଅବସରେ
ସନ୍ନ୍ୟାସର ନିୟାମକ ସତୀର୍ଥ ବେଭାରେ
ସଞ୍ଚରଇ ସୋଽହଂପ୍ରଭା ଅନାହତ ସ୍ୱରେ-
ପୂଣ୍ୟତୋୟା ଜାହ୍ନବୀର ତୀରେ
କାମନା ଅଗ୍ନି ଯେବେ ଧୂ ଧୂ ଜଳେ
ଅୟସ୍କାନ୍ତ ମଣି ସମ ଆକର୍ଷଣ କରେ
ମାୟା ମୋହ କାୟା କଷ୍ଟ, ରୂପ ରସ ଗନ୍ଧ ସ୍ପର୍ଶ ଝୁରେ ।
ତପଶ୍ଚର୍ଯ୍ୟା ଆଚରି ସଧୀରେ-
ଆତ୍ମୀୟତା ଅର୍ପିଦିଏ, ପରମାତ୍ମା ଜ୍ୟୋତି ବଳୟରେ ।
ବ୍ରହ୍ମଜ୍ଞାନ ସ୍ୱାଧ୍ୟାୟ କର୍ମରେ-
ଚିତ୍ତ ଚଞ୍ଚଳତା ହରେ
ପୂଣ୍ୟତୋୟା ଜାହ୍ନବୀର ତୀରେ
ପୂର୍ବେ ବ୍ରହ୍ମଶାପ ଫଳେ ପରୀକ୍ଷ ନୃପତି
ଶୁକମୁନି ଶ୍ରୀପୟରେ ନିବେଦି ପ୍ରଣତି
ଆତ୍ମ ଉନ୍ମୀଳନ ପ୍ରତି ଲଭିଥିଲେ ତୃପ୍ତି
ସୁର ନର ନାଗ ଲୋକେ ହେବାଲାଗି ମୁକ୍ତି
ସ୍ନାନ ଯୋଗ ମାର୍ଗ ସର୍ବେ ସୁଖେ ଆଚରନ୍ତି ।
ତେଣୁ ବୁଝି ବୁଝାଏ ସଂସାରେ
ଅଶେଷ ମହିମାନ୍ୱିତା ମା, ଜାହ୍ନବୀ ନୀରେ-
ସ୍ନାହାନ ମାର୍ଜନ କର୍ମ ସର୍ବ ପାପହରେ ।



# ଶ୍ରୀ ଜଗନ୍ନାଥ ସ୍ମରଣେ

କିଳ କଲ୍ଲୋଳିତ ତରଙ୍ଗ ମାଳ କୂଳେ ନୀଳଗିରି କନ୍ଦର କୋଳ
କମନୀୟ ଛନ୍ଦ ଭରା ମନ୍ଦିର, କଳା କଳେବର ଦିଅଁ ସୁନ୍ଦର ସେ-
କରନ୍ତି ଶ୍ରୀକ୍ଷେତ୍ରେ ଲୀଳା ଯେ- । କେକା ଚନ୍ଦିକାରେ ବନ୍ଧା ଘନକେଶ-
ଅଧରେ ମୂରଲୀ ଖେଳା ଯେ ।। ।୧।

କୃଷ୍ଣ କପୋଳେ ରାମନନ୍ଦୀ ଟାଣି, କଳାଡ଼ୋଳାରେ ତା ବାଙ୍କ ଚାହାଣି,
କେଳି କଳ୍କେ ନାସା ପୁଟେ ବସଣି, କୌତୁକେ ଖଞ୍ଜିଛି ବିଶ୍ୱ ବିନ୍ଧାଣୀ ସେ-
କାମଦେବ ଜିଣି ଶୋଭା ଯେ ।। କଳା ଧଳା ବେନି ମଧରେ ଭଗିନୀ
କନକ ବରନୀ ଉଭା ଯେ ।। ।୨।

କନକ ଉତ୍ତରୀୟ ପୀତ ବସନ, କଉସ୍ତୁଭ ମଣି ବକ୍ଷେ ଶୋଭନ ।
କୋମଳ ହୃଦୟେ ଶ୍ରୀବତ୍ସ ଚିହ୍ନ, କଟୀରେ ମେଖଳା ରତ୍ନଭୂଷଣ ସେ-
କମଳାପତି ବିହାର ଯେ ।। କାଳ ଭଇରବ ସଂଗତେ ବିମଳା-
କଳ୍କୀରାମ ଅବତାର ଯେ ।। ।୩।

କିମ୍ବଦନ୍ତୀ କ୍ରମେ କେତେ ଯେ ଉକ୍ତି, କଥନ ସୁଜନ ଜନେ ଭାଷନ୍ତି ।
କନ୍ଦର ଗହନ ବନେ ବସତି, କଳେବର ନୀଳମାଧବ ମୂର୍ତ୍ତି ସେ-
କନ୍ଦମୂଳ ଭୋଗ ପୂଜା ଯେ । କାନ୍ଦି ବିଶ୍ୱାବସୁ ପୂଜିଥିଲା ନିତି-
କାଳେ ସେ ଶବର ରାଜା ଯେ ।। ।୪।

କୃପାବଳେ ସ୍ୱପ୍ନ ମାଳବ ରାଜ । କରନ୍ତେ ଦର୍ଶନ ସେ ଚତୁର୍ଭୁଜ
କଲ୍ୟାଣକାରୀ ବିଦ୍ୟାପତି ଦ୍ୱିଜ । କାରଣ ସନ୍ଧାନେ ହୋଇଲେ ସଜ ସେ-
କନ୍ୟା ଲଳିତା ସାକ୍ଷାତେ ଯେ । କଉତୁକ ସୂତ୍ର ବନ୍ଧନେ ଦମ୍ପତି-
ହେଲେ ଦରଶନ ଅର୍ଥେ ଯେ ॥ ।୫।

କାମକେଳି ବଶେ ବାଳା ସଂକେତ । କୁଶଳୀ ଜନକ ବୁଝି ବ୍ୟଥିତ ।
କନ୍ୟା ଜାମାତା ବିନୟେ ଉକ୍ଷତ । କୋପ ସମ୍ବରଣ କାଳେ ବ୍ୟକତ ସେ-
କେବଳ ଅନ୍ଧ ନୟନେ ଯେ । କଣ୍ଟକିତ ପଥ ଅତିକ୍ରମ ସତ୍ୟ-
କରୁଣାନିଧି ଦର୍ଶନେ ଯେ ॥ ।୬।

କେଶବ ଅର୍ଚ୍ଚନେ ସାନନ୍ଦ ମତି । କୁଞ୍ଜର ଗମନା ଲଳିତା ସତୀ
କଉଶଳେ ପଥ ସନ୍ଧାନ ଚିନ୍ତି । କାନ୍ତ କରେ ଶସ୍ୟଜୀବ ବୁଣନ୍ତି ସେ-
କାମିନୀ ପୂଜ୍ୟ ଶ୍ରୀପତି ଯେ । କେବଳ ଦୟାରେ ଦର୍ଶନ ବିହିଲେ-
କୀର୍ତ୍ତି କର୍ମା ବିଦ୍ୟାପତି ଯେ ॥ ।୭।

କାଳେ ପୁଣି ହେଲେ ସେ ଅନ୍ତର୍ଦ୍ଧାନ । କଷଣ ଲଭି 'ବସୁ' ହତଜ୍ଞାନ
କଥିତ ଶୂନ୍ୟବାଣୀ ପ୍ରବଚନ । କୂଳରେ ଦାରୁ ରୂପେ ବିଦ୍ୟାମାନ ସେ-
କନ୍ଦର ଦିଅଁ ବିଚାର ଯେ । କି ବର୍ଣ୍ଣିବ ଭୋଳା ପୂର୍ଣ୍ଣ ଷୋଳକଳା-
ବ୍ରହ୍ମାଶିବେ ଅଗୋଚର ଯେ ॥ ।୮।

*'ନବକାକଳୀ'ରେ ପ୍ରକାଶିତ*



# କ୍ଳାନ୍ତ ପଥିକକୁ ପଦେ..........

କହରେ ପଥିକ ତୁ କେତେ ଦିନେ,
କଳା ଶ୍ରୀମୁଖ ଦେଖିବୁ ନୟନେ,
କାହିଁ କେତେ ଦୂର ଶ୍ରୀକ୍ଷେତ୍ର ତା'ର,
କିପରି ଯିବୁ ? ତୋ ବୃଦ୍ଧ ଶରୀରରେ--
କରି ଅଛୁ ଆଶା ।
କ୍ଳାନ୍ତ ପଥିକ ତୋ ଉଡ଼ିବ ହଂସାରେ ।।

କୁଶଳୀ ଭତକ ଅଛନ୍ତି କେତେ,
କିଏ ପଚାରିବ ସେଠାରେ ତୋତେ,
କମର ରେ ତୋର ନାହିଁରେ ବଳ,
କିପରି ଚଢ଼ିବୁ ପାହାଚ ତାର ରେ--
କହରେ ବାଟୋଇ ।
କେତେ ବେତ ମାଡ଼ ସହିବୁ ତୁହିରେ ।।

କାଳ ବହିଗଲାହେଲାଣି ସଂଜ,
କିମ୍ପାଇଁ ବେଳହୁଁ ନହେଲୁ ସଜ ।
କେତେ କେତେ ରଥୀ ଗଲେଣି ଥକି,
କେବେ ରଖିଛୁ କି ହିସାବ ଲେଖି'ରେ--
କହରେ ବାଉଳା ।
କାଳିଆ ମନ୍ତର କେ ତୋତେ ଦେଲା ରେ ।।

କାହାବୋଲେ ଅବା ଆସିବୁ ଆଜି,
କାଳିଆ ଠାକୁର ନାମ କୁ ଭଜି ।
କହିଲେ ନମାନୁ କାହାରି ମନା ।
କିମିଆଁ କଲା କି କାଳିଆ ନନାରେ
କରି ବେଣ୍ଣ ସ୍ୱନ ।
କଳରେ ଡାକିଲା ଜଗମୋହନ ରେ ।।

# ମୁଁ ଏକ ପ୍ରଶ୍ନବାଚୀ

ପୃଥିବୀ ପୃଷ୍ଠରେ-
ଦିବ୍ୟ ଚେତନାର ଅବତରଣ କାଳରୁ,
'ମୁଁ ଏକ ପ୍ରଶ୍ନବାଚୀ ହୋଇ ରହିଛି ।
'ମୁଁ କିଏ ? କେଉଁଠୁ ଆସିଛି ? କାହା ଇଚ୍ଛାରେ ?
ଦେହକୁ 'ମୁଁ' ବୋଲି ଚିହ୍ନଟ କରିବାରେ,
ଜୀବନର ସଂଜ୍ଞା ନିରୂପଣ ତଥା-
ସଂପର୍କର ମୂଲ୍ୟାୟନ ସମୟରେ,
ମନ, ଅଧିମନ, ବୋଧି ମନ ଏବଂ ଅତିମାନସ ସ୍ତରରେ,
ଦେହକୁ ବାଦ ଦେଇ 'ମୁଁ ' ର ସମୀକ୍ଷା ଓ-
ତାହାର ଚୂଡ଼ାନ୍ତ ନିଷ୍ପତ୍ତି, ଏ ଯାବତ୍ ହୋଇପାରିନାହିଁ ।
ସୁତରାଂ ଆତ୍ମ ଅଧ୍ୟୟନ କ୍ଷେତ୍ରରେ ବି-
ଦେହକୁ 'ମୁଁ' ର ସ୍ୱୀକୃତି ମିଳିନାହିଁ ।
ପରନ୍ତୁ 'ମୁଁ'ବିନା ଦେହର ଅସ୍ତିତ୍ୱ ନାହିଁ, ଏବଂ—
ଦେହ ବିନା 'ମୁଁ'ର ଅଭିବ୍ୟକ୍ତି ନାହିଁ ।

ପୁନଶ୍ଚ ଜୀବଜନ୍ତୁ ଓ ମଣିଷ ସୃଷ୍ଟିର—
ବୈଚିତ୍ର୍ୟ ଅନୁଭବ କଲେ ବା—
ମାଆ କୋଳର 'ମୁଁ'ର ଦେହକୁ ପ୍ରାଧାନ୍ୟ ଦେଲେ,
ମାଟି ମାଆ ସହ ପରିଚୟ ଅବଶ୍ୟମ୍ଭାବୀ ଯଥା-
ସବୁଜ ଶ୍ରୀଭରା ଧରିତ୍ରୀ ଓ ତା'ର ଆକର୍ଷଣ ।
ଅପରନ୍ତୁ ଆକାଶର ଶୂନ୍ୟତା ସହ ସାଗରର ପୂର୍ଣ୍ଣତା, ଏବଂ
ଅଦୃଶ୍ୟ ବାୟୁଗତିର ଅନିୟମିତ ଚଞ୍ଚଳତା,
ମାନସ ପଟରେ ଉଦ୍ଭାସିତ ହୁଏ ॥



ମୁନି ଋଷି ବିବେଚିତ ଉପଦେଶ କ୍ରମେ,-
'ମୁଁ' ସହ ମନମାନଙ୍କୁ ଯୋଗ ପଥରେ ମନେଇଁଲେ,
'ମୁଁ' ହୋଇଉଠେ ଈଶ୍ୱର । ତଥା ସର୍ବ ଭୂତରେ ବିରାଜିତ-
ପରମେଶ୍ୱରଙ୍କ ଅଂଶ ବିଶେଷ । ଅତଏବ୍ 'ମୁଁ' ହିଁ ଅବିନଶ୍ୱର ଯଥା :
'ନ ହନ୍ୟତେ ହନ୍ୟମାନ ଶରୀରେ' ।
ତେବେ ମୁଁ ଏକରୁ ବହୁ ନା ବହୁରୁ ଏକ ?

ପରୋକ୍ଷରେ ଗର୍ବ ଦମ୍ଭ ଅହଂକାର ବିଭୂଷିତ,
ମୋହ ମାୟା ପରିବେଷ୍ଟିତ,
ସଂଗ୍ରାମୀ ଭୂମିକାରେ, 'ମୁଁ' ର ସ୍ୱରୂପ ନିର୍ଣ୍ଣୟରେ,-
'ମୁଁ' ବ୍ୟକ୍ତି କେନ୍ଦ୍ରିକ ନା ନୈର୍ବୈକ୍ତିକ ??
'ମୁଁ' ସୃଜନଶୀଳ, ସ୍ଥିତିଶୀଳ, ନା ବିନାଶଶୀଳ ???



# ସହୃଦୟ ସ୍ୱଭାବ ଯୋଗେ

ସୂର୍ଯ୍ୟ ଯେବେ ଉଇଁଛି ନଭେ,
ରଶ୍ମିରେଖା ବିତରି ଭବେ,
ଶକ୍ତି ଯା'ର ସୃଜନଶୀଳ-
ଭକ୍ତି ଭରେ ବିହଙ୍ଗରବେ ।।

ସନ୍ତୁଳନ ତମସା ଛାଇ,
ଢଞ୍ଚାଳେ ଯା ଥିଲା ଘନେଇ,
ସନ୍ତର୍ପଣ ଗଲା ଉଭେଇ,
ମର୍ମବାଣୀ ଉଠିଲା ଚେଇଁ,
ସଂହତିର ଶୃଙ୍ଖଳା ଜାଗେ ।।

ସଂଯମରେ ପ୍ରେମର ସ୍ୱର
ସଂକଳନେ ହୁଏ ମୁଖର
ଶବ୍ଦଭୂମି ଚଳ ଚଞ୍ଚଳ
ମନ୍ତ୍ରତାନେ ମତି ବିଭୋର
ଶାନ୍ତିଧାମେ ପ୍ରଗତିଶୀଳ-
ନିରବଚ୍ଛିନ୍ନ ମମତ୍ୱ ମାଗେ ।।

ସଜ୍ଜନ କେ ଆସିଲେ ପରେ
ସଂଖୋଳି ବି ନିୟତ ତାରେ
ସୌଜନ୍ୟ ବା ସଂପ୍ରୀତିରେ
ସମ୍ବେଦନ ସ୍ୱାଧିକାରେ
ଶ୍ରଦ୍ଧା ବିନୟ ପ୍ରଶସ୍ତିରେ
ସହୃଦୟ ସ୍ୱଭାବ ଯୋଗେ ।



# ଅସରନ୍ତି

ଏଠି ତ ସବୁକିଛି ଅସରନ୍ତି ରୁ ଆରମ୍ଭ ଏବଂ-ଅସରନ୍ତିରେ କ୍ରମଶଃ ।
ଏକ ଆନନ୍ଦ ଦାୟକ ଏବଂ ନିରବଚ୍ଛିନ୍ନ ପ୍ରଗତି କାହିଁ ଅବା କାହାର ଶେଷ ?
ପ୍ରତିଟି ରକ୍ତ ବିନ୍ଦୁରେ ନିହିତ, ନୂତନ ଜୀବନର ସଂପୁଟ ।
ପ୍ରତିଟି ପ୍ରଭାତରେ ଚିହ୍ନିତ, ନୂତନ ଆଲୋକର ସଂକେତ ।।
ଆକାଶରେ ଅଗଣତି ତାରକା ସମ, ସଂସାରର ବଗିଚାରେ ଫୁଟନ୍ତି ଅସୁମାରି ଫୁଲ ।
ଅନେକ ରଙ୍ଗରେ ହସିଉଠେ ଜଗତ ।
ସମୟର ପାହାଚରେ ପାଦଥୋଇ ଓହ୍ଲେଇ ଆସନ୍ତି-
ଗ୍ରୀଷ୍ମ, ବର୍ଷା ଶରତ, ଶୀତ ଓ ବସନ୍ତ ।।
ବୟସର ଦୋଳିରେ ଝୁଲୁଥିବା ଫୁଲମାନଙ୍କୁ-
ସଜେଇ ଦିଅନ୍ତି, ସୁରଭିରେ, ମଧୁରେ ରୂପରେ ଓ ରଙ୍ଗରେ ।
ଅସରନ୍ତି ଫୁଲମାନଙ୍କର କାମନା, ଏବଂ-
ଅସରନ୍ତି ବି ଦେବତା ମାନଙ୍କର ଅର୍ଚ୍ଚନା ।
ଶାଶ୍ୱତ ପ୍ରେମ ସାରସ୍ୱତ ପ୍ରେରଣା, ଅନାବିଳ ସ୍ନେହ ମମତା,
ଏବଂ ଅବିସ୍ମରଣୀୟ ଓ ଅକ୍ଳାନ୍ତ ସାଧନା ।
ଅନାଘ୍ରାତ ନୁହେଁ ସିନା, ତଥାପି ଅକ୍ଷତ-
ଏହି ପ୍ରକୃତିର ମୂର୍ଚ୍ଛନା ।
ଅନିର୍ବଚନୀୟ କଳ୍ପନା ଓ ଅନୁସନ୍ଧିତ୍ସୁ ଉପାସନା ।
ଅନିବାର୍ଯ୍ୟ ସମ୍ଭାବନା ଓ ଅବଶ୍ୟମ୍ଭାବୀ ଉନ୍ମାଦନା ।
ଦିବ୍ୟ ଶକ୍ତିର ଅପରିହାର୍ଯ୍ୟ ଅବତାରଣା ଓ ଏଷଣା ।



# ଅଲିଭା ସ୍ମୃତି

ଅନେକ ଘନ ଘଟା ଅନ୍ତରାଳେ,
ଛପି ରହୁଥିବା ଅନ୍ତରଂଗତାକୁ-
ବୁଝିଲାଭଳି ମଣିଷଟି ଚାଲିଯାଇଛି ।
ବୋଧହୁଏ ଚାଲିଯାଇଛି ଅଭିମାନ କରି ।।
ଯିଏ ନିଜକୁ ତିଳତିଳ ସନ୍ତୁଳି-
ଆତ୍ମୀୟତା ବାଣ୍ଟି ଦେଉଥିଲା,
ଗଲା ଆସିଲାର ହିସାବ ରଖୁଥିଲା, ଏବଂ
ସମସ୍ତଙ୍କୁ ଆପଣେଇ ନେଉଥିଲା ।
ସହୃଦୟ ସଂପର୍କ ଯୋଡ଼ିବାର ସଂଳାପ-
କେବଳ ତା'ରି ନିକଟରେ ହିଁ ୮..୯ଥିଲା ।।
ସେ କିନ୍ତୁ ଯିବା ପୂର୍ବରୁ ଫେରି ଚାହିଁଛି -
ପରିତ୍ୟକ୍ତ ଇଲାକାକୁ ।
ଯାହା ସେ ସାଥିରେ ନେଇଯିବାକୁ ଚାହିଁଥିଲା ।
ପରପାରିକୁ । ତେଣୁ ସମସ୍ତେ ଖୋଜୁଛନ୍ତି-
ତା ସହ ବିତି ଯାଇଥିବା ଅତୀତର ଅଭୁଲାସ୍ମୃତିକୁ ।।
ଏମିତି ତ ସମସ୍ତେ ଯାଆନ୍ତି/ଯାଇଛନ୍ତି/ଯାଉଛନ୍ତି, କିନ୍ତୁ-
ତା ଯିବାରେ କିଛି ନୂତନତ୍ୱ ଅଛି, କାରଣ-
ସେ ଯାଇ ମଧ୍ୟ ଯାଇ ପାରିନାହିଁ ।
ଯାହାକୁ ଯାହା କହିବାର ଗଲା, ତା ମଧ୍ୟ କହି ପାରିନାହିଁ ।
ତା' ମନର କଥା/ପ୍ରାଣର ଆକୁଳତା/ ଦେହର ଦାହ...... ।।



ସେଥିପାଇଁ ସବୁରି ମନ ଝୁରୁଛି,
ତାର ବଦାନ୍ୟତା ଓ ବଂଧୁତ୍ୱ ତଥା-
ଅବିସମ୍ବାଦିତ ବ୍ୟକ୍ତିତ୍ୱ ଇତ୍ୟାଦି ଇତ୍ୟାଦି ।
ସବୁକିଛି ଅନୁରଣିତ-
ବିବର୍ତ୍ତନ ର ଉପକ୍ରମଣିକା ଆଶ୍ରୟରେ ।
ତା'ରି ହାତଗଢ଼ା ତୀର୍ଥ ଭୂଇଁରେ ।।
ସୁତରାଂ, ଏବେ ବି ତାର ଉପସ୍ଥିତି,
ଉପଲବ୍ଧି ହେଉଛି । ସତେ ଅବା ତାର-
ଅନୁଭୂତିର ଅବଶେଷ ବିଛାଡ଼ି ହୋଇପଡ଼ିଛି ।
ଅନୁସଂଧିତ୍ସୁ ପ୍ରତିଧ୍ୱନି ର ଜାଗୃତି ନେଇ-
ଅମରତ୍ୱ ସନ୍ଧାନରେ ଆତ୍ମାର ପ୍ରତ୍ୟୟ,
କାରଣ ଅବୟବ ଧରି ବିତରଣ କରୁଛି ।
(ସ୍ୱର୍ଗତଃ ଦାଶରଥି ପଟ୍ଟନାୟକଙ୍କ ପ୍ରଥମ ବାର୍ଷିକୀ ଶ୍ରାଦ୍ଧଉତ୍ସବ ଦର୍ଶନରେ)



# ଆରେ ମୋ ଶୂନ୍ୟ ଗାଡ଼ି

ଆରେ ମୋ ଶୂନ୍ୟ ଗାଡ଼ି, ମୋହ ମାୟା ଛାଡ଼ି-
ତୁ ସୁଖରେ ଯାଉଥା ଗଡ଼ି ଗଡ଼ି ଗଡ଼ି ।।
ଆକାଶେ ଘୋଟିଛି ଘନ ଅମା ରାତି
କାଳ ବଇଶାଖି ନିତି ଦିଏ ରଡ଼ି ।
ଆଶା ଆଷାଢ଼ରେ ଧାରା ଶ୍ରାବଣ
ଆଣିଥାଏ ଝଡ଼ ଘୋର ଗର୍ଜନ
ମେଘ ଘଡ଼ଘଡ଼ି ଶବଦରେ ଡରି
ତୋ ପରାଣ ପକ୍ଷୀ ଯାଇପାରେ ଉଡ଼ି ।।
ଭାଦ୍ର ଆଶ୍ୱିନରେ ଓଷା ପରବ
ଭାଙ୍ଗି ଦେଇପାରେ ଗେଲ ଗରବ
କାର୍ତ୍ତିକରେ ଶୀତ ହୋଇ ତୋର ମିତ-
ମାର୍ଗଶୀର ଧାନ କ୍ଷେତ ଆସିବୁ ମାଡ଼ି ।।
ପୁଷ ମାଘ ମାସେ କାଠୁଆ ଜାଡ଼
ବଙ୍କେଇ ଦେବ ତୋ କଅଁଳ ହାଡ଼
ଯେବେ ଅଳସୁଆ, ହେବୁରେ ଭକୁଆ-
ତୋ କ୍ଷେତ ଫସଲ ଯିବ ଉଜୁଡ଼ି ।।
ଫଗୁଣରେ ହେବ ଦୋଳ ଯାତରା
ହସିବ ଧରାରେ ସୁନେଲି ଖରା
ଚଇତାଳି ବାଆ, ହେବ ଯେବେ ସାହା
ପ୍ରେମରେ ଚାଲିବୁ ଆଗକୁ ମାଡ଼ି ।।
ଧରମ ନିକିତି ଧରି ନିୟତି
କରମ କୀରତି ରଖେ ସାଇତି
ସତ୍ୟକୁ ସାରଥୀ କରି ଦିବାରାତି-
ଗାଅ ଜୟ ଗୀତି ଘଡ଼ି ଦି ଘଡ଼ି ।।
ଆରେ ମୋ ଶୂନ୍ୟ ଗାଡ଼ି.........................................



# ବର୍ଷାର ଅନ୍ତରାଳେ

ବିଜୁଳୀର ମଶାଲ ଜଳେଇ, ବଜ୍ରର ବମ୍ ଫୁଟେଇ
କଳାମେଘି ପଣତ ଝୁଲେଇ-ବର୍ଷା କେବେ ରୋକିପାରେ କି :
ଉଷା ଆଉ ପ୍ରଭାତର ଶୁଭ ମିଳନକୁ !
ଏଡ଼େଇ ପାରେ ଆସନ୍ନ ମୁହୂର୍ତ୍ତଗୁଡ଼ିକୁ !!
ପରିବର୍ତ୍ତନ କରିପାରେ ସୃଜନୀର ନୀତି ନିୟମକୁ ??
କେଉଁ ଅନନ୍ତ ଯୁଗରୁ :
ଉଷା ଗାଉଛି ପ୍ରଭାତର ଆଗମନୀ ।
ପୁଲକିତ ହେଉଛି ଧରଣୀ !!
ସୁର ଝଙ୍କାର ତୋଳୁଛନ୍ତି-
କାକ କଜ୍ଜଳପାତି, କୁମ୍ଭାଟୁଆ ଓ ଟେଣ୍ଡେଇଁ ବଣୀ !!
କେହି ଭାଙ୍ଗି ପାରନ୍ତିନି—
ଏଇ ନିତିଦିନିଆଁ ମିଳନ ମଞ୍ଚକୁ ।
କଳାମେଘି ଅଞ୍ଚଳ ତଳେ :
ବର୍ଷା ଲୁଚେଇ ପାରେ ଇନ୍ଦ୍ରକୁ !
ଭିଜେଇ ପାରେ ବନାନୀକୁ !!
ନଚେଇ ପାରେ ମୟୂରୀକୁ !!!
କିନ୍ତୁ ସେ ସ୍ତବଧ୍ କରି ପାରେନା :
ସାଗର ର ଉତ୍ତାଳ ତରଙ୍ଗକୁ !
ଆକାଶର ସୌର ଶକ୍ତିକୁ !!



# ଉତ୍କଳ ଦିବସର ଅନୁଚିନ୍ତା

ଉତ୍କଳ ଦିବସେ ଯଶ ଗଉରବେ—
ଝଂକୃତ ଆମ ଉତ୍କଳ ଭୂଇଁ
ଉତ୍କଳୀୟ ଭାବେ କବିତା ଗାଇବେ—
ସମବେତ କବି ଭଉଣୀ ଭାଇ ।।

କବି ଭବଭୂତି କହିଛନ୍ତି ପରା
ହୃଦୟ ବିରାମ ଘୋଟିଲେ ବି ଜରା
ସାରସ୍ୱତ ରସ କଲ୍ଲୋଳିତ ଧାରା,—
କାବ୍ୟକୃତୀ କେବେ ଶେଷ ନୁହଁଇ ।।

କଳାର ଉତ୍କର୍ଷ ସାଧନେ ତତ୍ପର
ହୋଇଛନ୍ତି ଆମ ପୂର୍ବସୂରି ବୀର
ରଖିଛନ୍ତି ଜାତି ମହତ ଅପାର
ଆମରି ଉଜ୍ଜ୍ୱଳ ଭବିଷ୍ୟ ଚାହିଁ ।।

ଆମେ ତ ଉତ୍କଳ ଜନନୀ ସନ୍ତାନ
ସାହିତ୍ୟ ସମାଜେ ଆମେ ମହୀୟାନ
ଆମରି ସୃଜନ ସାରସ୍ୱତ ଗାନ—
ଗଗନେ ପବନେ ଉଠିବ ଚେଇଁ ।।

ଆମ ଚାରୁକଳା ଆମ କାରୁକଳା
ନିର୍ମାଣ କୁଶଳା ସୁଜଳା ସୁଫଳା
ଅଭିନୟ କଳା-ମଞ୍ଚ ବିଭୋରା-
ଆମ ଜନ୍ମଭୂମି ରହିଛି ଚାହିଁ ।।

ଆମେ ଶିଳ୍ପୀ ଗଣ ଲଭିବା କଲ୍ୟାଣ
ଗାଇ ତାର ଯଶ ଗଉରବ ଗାନ
ଜାତିର ପରାଣ ଜାଗିବ କମ୍ପନ
ଶାଶ୍ୱତ ସମ୍ମାନ ରଖିବା ପାଇଁ ।।



# ଜାଗରଣ

ତୁ ଜାଗରେ- -ଜାଗ ସଂଗ୍ରାମୀ ବୀର ଜାତି ।
ତୁ ମାଗରେ---ମାଗ ସଂହତି ଶାନ୍ତି ମୈତ୍ରୀ ।୦।
ରଣ ଦୁନ୍ଦୁଭିର ତୂର୍ଯ୍ୟନାଦରେ ତୋ, ରକ୍ତ ଉଠୁ ତାତି ।
ନିତ୍ୟ ନୂତନ ସୂର୍ଯ୍ୟ ତେଜରେ ଦୂରେଇଦେ ଭୟଭ୍ରାନ୍ତି ।।
ସିଂହ ବିକ୍ରମେ ଗର୍ଜି ଉଠରେ ଶତ୍ରୁରେ ଦିଅ ଶାସ୍ତି ।୧।
ବାଘାଯତୀନ୍‌ର ଦାୟାଦ ଜାଗରେ ଶହୀଦ୍‌ର ପୁତ୍ରନାତି ।
ସୀମାନ୍ତ ପ୍ରଦେଶେ ବୀରତୁ ଜାଗିଲେ ହଟିଯିବେ ଉଗ୍ର ପନ୍ଥୀ ।
ବକ୍ସି ଜଗବନ୍ଧୁ ଐକ୍ୟ ସୁମରି ଜଗ କ୍ଷେପଣାସ୍ତ୍ର ଘାଟି ।୨।
ବିର୍ସା ମୁଣ୍ଡାର ଫାର୍ଶା କାଟିଛି ଇଂରେଜ ଶାସକ ତଣ୍ଟି ।
ଖୋର୍ଦ୍ଧା ପାଇକ ରଖିଛି ଯେ ଟେକ ଧର ସେହି ଭାବମୂର୍ତ୍ତି ।।
ଜାଗରେ ଜଓ୍ୱାନ ଜାଗରେ କିଷାନ କହିଗଲେ ପରା ଶାସ୍ତ୍ରୀ ।୩।
ଇତିହାସ ନଥି ମଲାଟ ପୃଷ୍ଠାରେ ଲେଖା ତୋର ଯଶ କୀର୍ତ୍ତି ।
କୋଣାର୍କ ମନ୍ଦିର ମୁଖଶାଳା ଝୁରେ 'ଧରମା'ର ଜାତି ପ୍ରୀତି ।
ବାଜୀ ରାଉତର ବୀରତ୍ୱ ହୁଙ୍କାରେ, ରଣେ ପାତି ଦିଅ ଛାତି ।୪।
ମାତୃ ଜାତିର ସମ୍ମାନ ରଖରେ ଭ୍ରଷ୍ଟାଚାର ଯାଉଘୁଞ୍ଚି ।
ବୀର ପ୍ରସବିନୀ ଉତ୍କଳ ଜନନୀ ତୋହରି ଜନମ ଦାତ୍ରୀ ।
'ଚଣ୍ଡାଶୋକ'ଙ୍କୁ 'ଧର୍ମାଶୋକ' କଲା କଳିଙ୍ଗର ସେନାଶକ୍ତି ।୫।
ବୋଇତେ ବଣିଜେ ଏ ଦେଶ ସାଧବ ହେଉଥିଲେ ଦୂର ଯାତ୍ରୀ
ଆଜି ତୋ ରାଇଜେ ଖଣିଜ ସଂପଦ କୋଣ ଅନୁକୋଣେ ଭର୍ତ୍ତି ।
ଉତ୍କଳମଣି ଗଉରବ ଗୁଣି । ବୀର ତୁ ଉଠରେ ମାତି ।୬।



# ଆହ୍ୱାନ

କ୍ରାନ୍ତି ମଣିଷ ଆହ୍ୱାନ କ୍ରମେ ଜାଗ୍ରତ ହୁଅ ଜାତି
ଅପସଂସ୍କୃତିରେ ବିଲୋପ ସାଧନେ ସଂଗ୍ରାମୀ ଉଠ ମାତି ।।
ବିଜ୍ଞାପନରେ ନଗ୍ନତା ଭରେ ଦୂରଦର୍ଶନ ତୃପ୍ତି
ପାଶବିକତାର ବୀଭତ୍ସସୁରେ ନୈତିକ ଅଧୋଗତି ।।
ଦୁଃଶାସନର ମନ୍ତ୍ରଣାରେ ଗଢ଼େ ଶକୁନିର ପଶାକାଠି
ଯାଜ୍ଞସେନୀର ଜାନୁଯୌବନ ଦୁର୍ଜ୍ଜନେ ଦିଏ ଭେଟି ।।
ସ୍ୱର୍ଣ୍ଣ କାତର ସୌନ୍ଦର୍ଯ୍ୟବୋଧ ଲୋଲୁପ ସବୁରି ଦୃଷ୍ଟି
ପଶ୍ଚାତେ କିନ୍ତୁ ମାନବ ସମ୍ବଳ ଶଇତାନ ଖାଏ ବାଣ୍ଟି ।।
ଭୋଟ ସର୍ବସ୍ୱ ସମାଜରେ ଭରା କୁଳଷିତ ରାଜନୀତି
କମିଶନ ମଞ୍ଚେ ଶୁଭେ ହୋ ହଲ୍ଲା ଲୁଟିନେଲେ କୋଟି କୋଟି ।।
ହତ୍ୟା ଲୁଣ୍ଠନ ଧର୍ଷଣ ଶୋଷଣ ନାରୀ ନିର୍ଯ୍ୟାନତା ଭ୍ରାନ୍ତି
ଅଣନିଃଶ୍ୱାସୀ ସଭ୍ୟ ସମାଜ ମସ୍ତକେ ମାରେ ଲାଠି ।।
ମୁଦ୍ରା ସ୍ଫୀତିରେ ଭୁଷୁଡ଼ି ପଡ଼ିଛି ସମ୍ଭାବ୍ୟ ଅର୍ଥନୀତି
ବଧ୍ୟ ଭୂମିରେ ଉଜ୍ଜଳି ଉଠିଛି ଜୀବନ ଯଜ୍ଞ ଦୀପ୍ତି ।।
ଶାଶ୍ୱତ ଐତିହ୍ୟ ମହାନୁଭବତା ହେଉଛି ଯା ଆତ୍ମାହୁତୀ
ପ୍ରଜ୍ଞା ପ୍ରତିଭା ସୃଜନଶୀଳତା ମୂଲ୍ୟବୋଧ ଯାଏ ତୁଟି ।।
ଦଲାଲ ବୁର୍ଜୁଆ ଭଣ୍ଡାମି ବୟାନ ପ୍ରଚାରିତ ଦିବାରାତ୍ରି
ସଂଗ୍ରାମ ବିନା ସମ୍ଭବ କାହିଁ ସଂହତି ପଥେ ଶାନ୍ତି ।।
ନିରଂକୁଶ ତେଣୁ ସାମ୍ରାଜ୍ୟବାଦୀ ସିଂହାସନର ସ୍ଥିତି
ଆଗାମୀ ପୀଢ଼ିର ଦାୟାଦ ପାଇଁ ସାଇତା କେବଳ ଶାନ୍ତି ।।



# ସଦ୍‌ଭାବନା ବିନା ସବୁ ବୃଥା

କାଶ୍ମୀର ଉପକଣ୍ଠେ କେତେ ଯେ କମାଣ ଫୁଟେ
ଜଳିଉଠେ ଶହୀଦ୍‌ଙ୍କ ଚିତା ।
ପଣବନ୍ଦୀ ବିନିମୟ ଉଗ୍ରପନ୍ଥୀର ଭୟ
ଜଗାଉଛି ପର୍ଯ୍ୟଟକ ହତ୍ୟା ।।
ଈଶ୍ୱରଙ୍କୁ ପଚାରିଲି ବୁଝେଇ ଦେବକି ବୋଲି
ସାଂପ୍ରଦାୟିକ ଭିତ୍ତି ତଥା ।
ସେ କଥା କହିଲେ ନାହିଁ, ନାହିଁ, ସେ କଥା ମୁଁ ବୁଝେ ନାହିଁ ।
ପ୍ରତି ପ୍ରାଣେ ଉଦାର ମୋ ସତ୍ତା ।।
ମେଘକୁ ମୁଁ ପଚାରିଲି ସମ୍ପ୍ରଦାୟ ବୁଝୁ ବୋଲି
ସିଏ ବି ତ ହଲାଇଲା ମଥା
ଜଳକୁ ପଚାରିବାରେ ବହିଗଲା ଖରତରେ
ଦେଇଗଲା ମୋ ମନରେ ବ୍ୟଥା ।।
ଫୁଲଟିଏ ପାଖେ ଗଲି ଏକା ପ୍ରଶ୍ନ ପଚାରିଲି
ସେ କହିଲା ଜାଣେ ନାହିଁ ମୁଁ ତା,
ଆଦର ମୁଁ ସଭିଙ୍କର ନାହିଁ କେହି ନିଜପର
କାହିଁ ସମ୍ପ୍ରଦାୟ ଅନୁଚିନ୍ତା ?
ଆଲୋକକୁ ଦେଖି ପଥେ ପଚାରିଲି କହ ମୋତେ
ବୁଝିଛୁକି ସମ୍ପ୍ରଦାୟ ପ୍ରଥା ।
ସେ କହିଲା ଦେଖ ଭାଇ ସାରା ଜଗତର ମୁହିଁ
ସଂସାରୀଙ୍କୁ ଦେଖାଉଛି ରାସ୍ତା ।।
ପବନ ଯା ଗଲା କହି ସେ ଯୁଗ ଗଲାଣି କାହିଁ
ସଦ୍‌ଭାବନା ବିନା ସବୁ ବୃଥା
ସାଂପ୍ରଦାୟିକ ସଂପ୍ରୀତି ଦୂର ଅତୀତରେ ସାଥୀ
ଆଜି ରାଜନୀତି ବଡ଼ ଶସ୍ତା ।।



# ଭାଇ ପାଲଟେ ଭଗାରୀ

ବିଷର କୁଣ୍ଡେଇଟିଏ ସୀମାନ୍ତର ମଣି ବନ୍ଧ ଡ଼େଇଁ
ଅଚାନକ ସାଗର ବେଳାରୁ ଗିରିଶିଖେ ଉଠିଗଲା ଚେଇଁ ॥
ମଦ୍ୟପର ବାଚାଳତା ସ୍ବରେ ପ୍ରତାରଣା ଅଭିଳାଷ ନେଇ-
ତୁଷାର ହିମାଦ୍ରି ତୁଙ୍ଗେ ରଣଭେରୀ ଥିଲା ସେ ବଜେଇ ॥
ଭାବିଲା କି ସୀମାନ୍ତ ରକ୍ଷାରେ ବର୍ବରତା ଶୋଭା ପାଏ ନାହିଁ ?
ମସଗୁଲ ରଙ୍ଗୀନ ନିଶରେ ଝୁଲି ଝୁଲି ପହଣ୍ଡ ପକାଇ ।
ମନାସିଲା କମାଣ ଚିବୁକେ ଚୁମ୍ବନର ଲେପ ଦେବା ପାଇଁ
ମରୀଚିକା ପଥେ ପାଥୋଇ ଯବନିକା ପରଦା ଆଡ଼େଇ ।
ଦେଖୁଥିଲା ବିଭୀଷିକା ଚିତ୍ର ସପନର ମଞ୍ଚ ଦୋହଲେଇ ॥
ବାଉଳା ସେ କ୍ଷେପଣାସ୍ତ୍ର ପାଶେ ଅଟ୍ଟହାସ୍ୟେ ଜଣାଇ ବଧାଇ
ପତଙ୍ଗ କି ଅଗ୍ନିଶିଖା ତ୍ରାସେ ଅବିଳମ୍ବେ ନପାରିଲା ଧାଇଁ ॥
ଅତୀତର ଦୁଃସାହସ ଭରି ଭଣ୍ଡବୀର ବେଶକୁ ସଜେଇ ।
ଅଭ୍ୟନ୍ତରେ ପିଟିଲା ଡିଣ୍ଡିମ ରଣାଙ୍ଗନ ସମ୍ମୁଖ ନ ହୋଇ ॥
ଚୌର୍ଯ୍ୟବୃତ୍ତି ଅବଲମ୍ବନରେ କୁହାଟିଲା ତୁହାଇ ତୁହାଇ
ଅବିଶ୍ୱାସ ହୀନମନ୍ୟତାର ପଳାତକ ହେବ ଅବା ସେହି ॥
ଏ ଜାତିର ନୀଳିମା ଆକୋଶେ ବୋଳିବାକୁ ଉଆଁସର ଛାଇ
ଆସିଥିଲା ପ୍ରତାରକ ବିଶ୍ୱାସଘାତକ ସଂଦେହର ଘନଘଟା ନେଇ ॥
ଅଗାମୀ ଦିନର ଉଷା ଉଇଁଲାନି ଆଉ ତାହା ପାଇଁ ।
ଲେଲୀହାନ ଅଗ୍ନିଶିଖା ବୁକେ ନିମିଷଟା ପାରିଲାନି ଶୋଇ ॥
ଏ ନୁହେଁ ମୋ ସହୋଦର ଭାଇ ଯା ଚରଣେ ମଥାଯାଏ ନଇଁ
ଏ ନୁହେଁ ସୀମାନ୍ତ ରକ୍ଷୀ ଯେ ଥିଲା ମୋ ଦେଶ ମାତୃକାର
ପରାଧୀନ ଶୃଙ୍ଖଳ ଛିଣ୍ଡେଇ ॥



# ନୀୟତୀ

ବନ୍ୟା ପ୍ରପୀଡ଼ିତ ଅନାହର କ୍ଲିଷ୍ଟ ବୁଭୁକ୍ଷୁ ସର୍ବହରା
ଆମେ ପରାଜିତ ଆମେ ଶଙ୍କିତ ବଞ୍ଚିବା-ବ୍ୟଥାତୁରା ।।
ଉଜୁଡ଼ିଲା ଆମ କ୍ଷେତର ଫସଲ ଭାସିଗଲା ଘରଦ୍ୱାର
ଭାଙ୍ଗି ପଡ଼ିଛି ସୁସ୍ଥ ମନୋବଳ ଭରି ଦେଇ ହାହାକାର ।।
ଉଷର ପ୍ରାନ୍ତରେ ଭିଟାମାଣି ଡାକ କେମିତି ଶୁଣିବୁ ତ୍ୱରା
ଖୋଜିବୁଲୁ ରାହା ବନତରୁ ଛାୟା କରୁଣ କାତର ଭରା ।।
କିଏ କାହିଁଗଲେ ମଲେ କି ହଜିଲେ କେ ଦେବ ହିସାବ ତା'ର ।
କର୍ମ କଷଣ ଦୁନିଆ ଦୁଷଣ ହୃଦୟେ କାଟିଛି ଗାର ।।
ବିଜୟର ଟୀକା ପିନ୍ଧାଇବା ଲାଗି କିଏ ଅବା ଦେବଧରା ।
ବିଚ୍ଛେଦ ଅନ୍ତରରେ ଜାଗେ ବୁକୁ ତଳେ ବ୍ୟର୍ଥ ଜୀବନ ଧାରା ।।
ନାହିଁ ବସବାସ ବିରହ ହତାଶ ଉଦାସ ମାନସ ପ୍ରେମ ।
ଯାଚିଦେବ କିଏ ମମତା-ସାହସ ପରାହତ ସେବା ଧର୍ମ ।।
ଆଉ କେ କହିବ ଆହା ପଦ ସତେ ଶୁଖିଛି ପ୍ରୀତିର ଧରା ।
କେମିତି ବାହିବୁ ସଂସାର ନଉକା ସହି ସହି ବର୍ଷା ଖରା ।।
କୋଟି କଣ୍ଠରେ ଗୁଞ୍ଜରୀ ଉଠେ ବତାସୀ ଝଡ଼ର ସ୍ୱର ।
ନାଚି ଉଠେ ପ୍ରାଣେ କରୁଣ ଚିତ୍କାର ନୟନର ଅଶ୍ରୁନୀର ।।
କରାଳ ବନ୍ୟା କବଳିତ ପ୍ରାଣୀ ବାହୁଡ଼ିବେ ନାହିଁ ପରା ।
ଶ୍ମଶାନ ପାଲଟି ଗଲା ଦେଶ ମାଟି ଘୋଟିଲା ଅକାଳ ଜରା ।।
ଅନଟନ ଭାଉ ଜଳେ ଦାଉ ଦାଉ ଅନଳର ଶିଖା ତୋଳି ।
ଅଚିରେ ଜଳିବ ଏ ସାରା ଜଗତ ନେବ ଆମ ଆତ୍ମବଳି ।।



# ସଂକଟ ଘେରରେ ମଣିଷ

ମଣିଷ ମନରେ ଅଶେଷ କାମନା-
ନିତି ସିନା ଉଙ୍କି ମାରେ ।
ଆଶା କଳପନା ସଫଳ ହୁଏନା-
ସୁଖ ହଜେ ସପନରେ ।।
ଦୂଷଣ ନିଆଁରେ ଜଳୁଛି ଦୁନିଆ
ବୈଷମ୍ୟ ଦାୟରେ ସଂସାରୀ ଛାନିଆଁ
ଜୀବନ ଜଂଜାଳେ ପ୍ରେମର କିମିଆଁ
ସମସ୍ୟାର ନୀଡ଼ ତୋଳେ ।।
ଜନ ବିସ୍ଫୋରଣେ ସମାଜ ଦୁର୍ବଳ
ପ୍ରଦୂଷିତ ବାୟୁ ଗଗନ ମଣ୍ଡଳ
ଘନେଇ ଉଠୁଛି ଚୁମ୍ବକୀୟ ଝଡ଼-
ଛିଦ୍ର ବି ଓଜନ ସ୍ତରେ ।।
ଉଦ୍‌ଶୃଙ୍ଖଳତାରେ ତ୍ରସ୍ତ ଗଣତନ୍ତ୍ର
ଜାତୀୟ ଗୌରବ ରବି ଅସ୍ତମିତ
ମରୀଚିକା ଭରା ପ୍ରଗତିର ପଥ
କ୍ଷମତା କନ୍ଦଳ ମଧ୍ୟରେ ।।
ଆଭିଜାତ୍ୟ ମୋହ ଗର୍ବ ଦମ୍ଭ ପାଶେ
ନିଦାଘ- ବତାସେ ବିଷାଦ ମାନସେ
ମଣିଷ ଭାବୁଛି ସଂକଟର ଶେଷେ
ଶାନ୍ତି ଅବା ଫେରି ପାରେ ।।
ଦେଶେ ମହାଦେଶେ ସକଳ ମଣିଷ
ବାଛି ନେଉ ନିଜ ଭାଗ୍ୟ ଓ ଭବିଷ୍ୟ
ଅଚଳ ହେଲାଣି ଜାତି ନନ୍ଦିଘୋଷ
ଭ୍ରଷ୍ଟାଚାର ଅହଂକାରେ ।।

*ଗାଁ ଗଣ୍ଡା ସାହିତ୍ୟ ସଂସଦ ଦ୍ୱାରା "ମଣିଷ ଏକ ଅଭିନବ ଅଧ୍ୟୟନ" ରାଜ୍ୟସ୍ତରୀୟ ସଂକଳନରେ ପ୍ରକାଶିତ ।*

# ତୁମେ ଆଉ ଆସିବ ନାହିଁ

ହେ ପ୍ରଳୟ ତୁମେ ଆସନା ଉତ୍କଳେ ମହାବାତ୍ୟା ରୂପଧରି ।
ଉତ୍କଳ ଜନନୀ କାନ୍ଦୁଛି ବିକଳେ ସନ୍ତାନମାନଙ୍କୁ ଝୁରି ।।
ଉଣେଇଶି ଶହ ଅନେଶ୍ୱତ ବର୍ଷ, ଅକ୍ଟୋବର ଅଣତ୍ରିଶ ।
ଅଲିଭା ଅକ୍ଷରେ ଲେଖିଗଲା, କ୍ଳେଶ, ଦେଖାଇ ତୁମରି ବେଶ ।।
ଚାହେଁନା ଆଉ ସେ ତାଣ୍ଡବ ଲୀଳା ଦେଖିବାକୁ ଏଇ ଭବେ ।
ମୋ ଟିକି ସଂସାର ସେ ଦିନୁ ଉଜୁଡ଼ା ସଜାଡ଼ି ହୁଏ ନା କେବେ ।।
ଆତଙ୍କରେ ଦେହ ଉଠେ ମୋ ଶୀତେଇ ଶୁଣିଲେ ତୁମରି ନାଆଁ ।
ଆଖିରେ ନାଚୁଛି ପୂର୍ବେଥିଲା ଯହିଁ ସବୁଜ ସୁନ୍ଦର ଗାଆଁ ।।
କେତେ ଯେ ଆତ୍ମୀୟ ହଜି ଯାଇଛନ୍ତି କେତେ ଯାଇଛନ୍ତି ମରି ।
ସାକ୍ଷାତ ପାଇଁ ଯେତେ ମୁଁ ଭାବୁଛି କେହିତ ଆସେନା ଫେରି ।।
କହିବ ପ୍ରଳୟ କି ସୁଖ ପାଇଲ ଓଡ଼ିଶା ଉଜାଡ଼ି ଦେଇ ।
କେତେ ଜୀବ ଜନ୍ତୁ ଅକାଳେ ନାଶିଲ ସଠିକ ହିସାବ ନାହିଁ ।।
ପଛୁଆ ବର୍ଗର ଦଳିତ ଜାତିକୁ କରିବାକୁ ହତମାନ୍ୟ ।
ଆଉ ଆସିବନି ଏଇ ପ୍ରଦେଶକୁ ଦେଉଛି ତୁମକୁ ରାଣ ।।
ନିଜ ପଥରେ ମୁଁ ତାଥାପି ଚାଲିଛି ମଣିଷର ଅଭିଯାନେ ।
ଅଗାମି ଦିନକୁ ବଞ୍ଚିବି ଭାବିଛି ଚେତନା ଜଗାଇ ପ୍ରାଣେ ।।
ଯଦି କବେ ଆସ ଝଂଜା ସାଥିରେ ସାଗର ଲହରୀ ତୋଳି ।
ଉତ୍କଳ ଭୂଇଁରେ ପାଦ ପକେଇଲେ ଶୁଣିବ ମୋଠାରୁ ଗାଳି ।।



# ପରିବେଶ ସୁରକ୍ଷା ଆଜିର ଆହ୍ବାନ

ଭୂମିରୁ ଭୂମା ଯାଏ ପ୍ରଦୂଷିତ ଆଜି ପରିବେଶ ।
ବ୍ୟଷ୍ଟିରୁ ବିଶ୍ୱ ଯାଏ ପ୍ରଦୂଷଣ ସମସ୍ୟା ଅଶେଷ ।।
ସୁବର୍ଣ୍ଣ ଜୟନ୍ତୀ ଘୋଷେ ଏ ସ୍ୱାଧୀନ ଗଣତନ୍ତ୍ର ଦେଶ ।
ଦାରିଦ୍ର୍ୟରୁ ମୁକ୍ତି, ନିଃସ୍ୱେ, ନାହିଁ ଅର୍ଥ ପ୍ରାପ୍ତିର ସନ୍ଦେଶ ।।
ଜୀବନର ମୂଲ୍ୟବୋଧ, ସଦା ନଷ୍ଟ କରୁଛି ସନ୍ତ୍ରାସ ।
ସଂପ୍ରତି ଶିଳ୍ପ ଉଦ୍ୟୋଗ, ଚାଷ ଜମି ଶେଷ ଅବକାଶ ।।
ଜନସଂଖ୍ୟା ଶହେ କୋଟି ଖାଦ୍ୟର ସଂକଟ, ଭାରତରେ ଆଣିଛି ହତାଶ ।
ଶାସକର ପ୍ରୋତ୍ସାହନ ରାଜନୀତି ଭୋଟ୍, ବୃଥା ଯାହା ଛଳନା ବିଶ୍ୱାସ ।।
ଆପଣା ସ୍ୱାର୍ଥରେ ନେତା ଦେଉଛନ୍ତି ଭାଷଣ ବିଶେଷ ।
ଗରିବ ଜଳକା ଚାହେଁ, ମହାପାତ୍ର ଲୁଟି ନିଏ, ଯାହା ତାର ଭାଗ୍ୟ ଓ ଭବିଷ୍ୟ ।।
ଓଜନ ଗ୍ୟାସର କ୍ଷୟ, ଚୁମ୍ବକୀୟ ଝଡ଼ର ଆଭାସ ।
ମହାବାତ୍ୟା, ଅଂଶୁଘାତ, ଆତଙ୍କିତ ଆଜିର ମଣିଷ ।।
ସାଂପ୍ରଦାୟିକ ବିଭେଦ, ମୌଳବାଦୀ ଅହଂକାର ଗ୍ରାସ ।
ସଭ୍ୟତା ନାମରେ ସଦ୍ୟ ଜୁଆଖେଳ ନଗ୍ନତା ରାହାସ ।।
ଐତିହ୍ୟ ଓ ପରଂପରା, ସାମାଜିକ ଭ୍ରଷ୍ଟାଚାର ଦୋଷ ।
ମାତୃଜାତି ନିରାପତ୍ତା, ଆଇନ୍ ର ଆଖିଠାରେ ବଶ ।।
ସଂଗ୍ରାମୀବୀର ଓ ଚାଷୀ, ସହୁଛନ୍ତି ତିରସ୍କାର କ୍ଳେଶ ।
ମାୟା ମରୀଚିକା ଭରା ପ୍ରଗତି ସାହାରା, ବୁଝନ୍ତିନି ଶାସକ ବିଶେଷ ।।
ଅପ୍ରମିତ ଯାନ ବାହାନ ରୁ ହୁ ହୁ ଧୂମ ନିଷ୍କାସନ ।
ନିମନ୍ତ୍ରଣ କରିଆଣେ ଧ୍ୱଂସ ।।
ପୁଷ୍କରିଣୀ ଜଳପାନ ରୋଗ ଅଭିଯାନ ।
ଏଡ୍‌ସ, କର୍କଟ ଆଦି, ମହାମାରୀ କରେ ସର୍ବନାଶ ।।
ଡାକବାଜୀ ସ୍ୱର ଉଚ୍ଚାରଣ, କରେ ଶବ୍ଦ ପ୍ରଦୂଷଣ ।
ବୃକ୍ଷ ବିନା ଅମ୍ଳଯାନ ଶୂନ୍ୟ-ମରଣ ସ୍ୱାଗତ ଅଭିଳାଷ ।।
ବେକାର ଓ ଶିଶୁ ଶ୍ରମିକର ମାନବ ସମ୍ବଳ ହୀନମନ୍ୟ ।
'ନଷ୍ଟସ୍ୟ କାନ୍ୟାଗତି, ପରିବେଶ ବୟାନ ଯା ହେବ ନାହିଁ ଶେଷ ।।



# ହାୟ-ମଦନ ଭୁଷଣ୍ଡା

ଅତୀତରେ ଯିଏ ଥିଲେ କଳିଙ୍ଗା ଭେଣ୍ଡା
ଏବେ କିମ୍ୱା ସିଏ ହେଲେ ଓଡ଼ିଆ ମେଣ୍ଢା ?
ଯା ସାଥେ ଲଢ଼ିବା ପାଇଁ ମଗଧର ନରସାଇଁ
ବୁହାଇଲେ ରକ୍ତ ନଈ ଅଶୋକ ଚଣ୍ଡା ।୧।

ଲଢ଼େଇ ହେଲା ପ୍ରବଳ ବିତିଗଲା ବହୁକାଳ
ଧନ୍ୟ ସେ ଏକତା ବଳ ହେଲା ନାହିଁ ହୀନବଳ
ବିସ୍ମୟେ ମଗଧେଶ୍ୱର ତେଜିଲେ ଖଣ୍ଡା ।୨।

ଇଂରେଜମାନଙ୍କୁ କେହି ମଥାନତ କଲେ ନାହିଁ
ଜଗନ୍ନାଥ ରକ୍ଷା ପାଇଁ ରାମ ହେଲେ ହିନ୍ଦୁ ଦ୍ରୋହୀ
ବକ୍ସି ଜଗବନ୍ଧୁ ଯହିଁ ଥିଲେ ପ୍ରଚଣ୍ଡା ।୩।

ସେ ଏକତା ଗଲାକାହିଁ ସେ ବୀର ଗଲେକି ଶୋଇ
ଅଛି ସେ ଉତ୍କଳ ଭୂଇଁ, ଉତ୍କର୍ଷ ତା ଆଉ ନାହିଁ
ଖୋରଧା ପାଇକ ଭାଇ ହେଲେ କି ଲଣ୍ଡା ?।୪।

ଏବେ ଶୁଭେ ହାହାକାର । ଅନାହାର ମରଣର
ନାହିଁ କିଛି ପ୍ରତିକାର । ନବୁଝନ୍ତି ସରକାର
ତଥାପି ନେତାଙ୍କ ଗୁଣ୍ଡା ଛଡ଼ନ୍ତି ''ହୁଣ୍ଡା'' ।୫।

ଯାନାମଟି ରାଜବଟୀ, ସେହିତ ଶୋଷଣ ଘାଟି
ଦିବସରେ ତଣ୍ଟିକାଟି, ଖଣ୍ଡ ନିଏ ଧନ ଲୁଟି
ଧର୍ଷଣ କରନ୍ତି ସେଠି ବାଲୁଙ୍ଗା ଦଣ୍ଡା ।୬।

ମେଣ୍ଢା ମୁଣ୍ଡ ସିନା ଟାଣ, ଭୀରୁ ଆଜି ଜ୍ଞାନୀଗଣ
କରନ୍ତି ବୃଥା ବୟାନ ହଜିଗଲା ବୁଦ୍ଧି ଜ୍ଞାନ
ହେଲାଣି କି ମତିଭ୍ରମ ବାକ୍ୟ ବିତଣ୍ଡା ।୭।

ବାତ୍ୟା ମରୁଡ଼ିରେ ଚନ୍ଦା, ଫଳି ନାହିଁ ଶସ୍ୟ କେଣ୍ଡା
ଲୋକେ ଛାଡ଼ି ଗାଁ ଗଣ୍ଡା, ଖୋଜୁଛନ୍ତି କାମ ଧନ୍ଦା
ନିର୍ଲ୍ଲଜ ଏ ଭୋଟ୍ ପଣ୍ଡା ଉଡ଼ାନ୍ତି ଝଣ୍ଡା ।୮।

ଶେଷ ହେଲା ସବୁ ଫନ୍ଦି ଦେଶ ହେଲା ଋଣ ବୃଦ୍ଧି
କରି ନିଜ ସ୍ୱାର୍ଥ ସିଦ୍ଧି ନେତା ହେଲେ ହୀନବୁଦ୍ଧି
ବୃଥା ଆଚରଣ ବିଧି ଶପଥ ଧଣ୍ଡା ।୯।



# କାହିଁ ଆମ ଭାବମୂର୍ତ୍ତି

ଆମେରେ ଓଡ଼ିଆ ଜାତି,
ଦୂର ଅତୀତର କଳିଙ୍ଗ ଉତ୍କଳ ବାସୀ ।
ବନ୍ୟା ଆମର ଚିର ସହଚର
ବାତ୍ୟା ମରୁଡ଼ି ଆମରି ଜୀବନ ସାଥୀ ।।
ଆମରି ରାଜ୍ୟ ପର୍ବତ ଘେରା ଖଣିଜ ସଂପଦ ଭରା
ଆମ ଜଙ୍ଗଲର ବିଭବ ଅସରା, ଆମେ କିନ୍ତୁ ସର୍ବହରା ।
ଆଜି ବି ଉଜୁଡ଼ା ଆମରି ସଂସାର ଉଛୁଳେ ନଦୀର ଧାରା
ବ୍ୟର୍ଥ ଆମେରେ ଆଜୀବନ ଖଟି ଖଟି
ପଛୁଆ ଆମେରେ ହିଡ଼େ ଲଦି ହିଡ଼ ମାଟି ।
ବିସ୍ମରି ଗଲା ଆମରି ଅନ୍ତରୁ ଜାତୀୟ ଏକତା ସ୍ୱର
ଆସେନା ସମ୍ରାଟ ଲୁଟି ନେବା ଲାଗି କଳିଙ୍ଗର ଗନ୍ତାଘର ।
ଖୋରାଧା ପାଇକ ଇଂରେଜ ଶାସକ ସଙ୍ଗେ କରେ ନାହିଁ ଗୋଳ ।
ଅମର ଶହୀଦ୍ ପତାଇ ଦିଏନା ଛାତି-
ସ୍ୱାଧୀନତା ପ୍ରେମୀ ରକ୍ତ ଉଠେନା ତାତି ।।
ଭାଙ୍ଗି ପଡ଼ିଛି ଶିଳ୍ପୀର କୀର୍ତ୍ତି କୋଣାର୍କର ସ୍ମୃତି ସ୍ତମ୍ଭ
ଉଭେଇଯାଇଛି ସ୍ୱଦେଶୀ ସାଧବ ବୋଇତ ବଣିଜ ଦମ୍ଭ
ବାଲୁତ ଧରମା ଆଉତ ରଖେନା ଜାତିର କଟିବା ମୁଣ୍ଡ

ବନ୍ଦୀ ଆତ୍ମକଥା ଜଗାଏନା ଦେଶପ୍ରୀତି-
ବକୁଳ ବନରେ କୋକିଳ ଗାଏନା ଗୀତି ॥
ଜୟଦେବ କୃତ, ଉପେନ୍ଦ୍ର ସମ୍ଭୁଚତ ମହତ ପୁରୁଷ ପୋଥି
ଉତ୍କଳ ଗୌରବ, ବ୍ୟାସକବି ଦିବ୍ୟ ଭାରତୀ ଯାଇଛି ଲୁଚି
ଅପଭ୍ରଂଶ ବି ଓଡ଼ିଆ ମୁଖରେ ଝଂକୃତ ସ୍ୱର ଲିପି,
ଆଗାମୀ ଦିନକୁ ଅଛି କିବା ଭୂତି-
ଓଡ଼ିଆ କୋଡ଼ିଆ ଦୋ ନାଆ ବୁଡ଼ିଆ ନୀତି ॥
ଆମ ନେତା ଜାତୀୟ ଏକତା ତୋଳିଛି ବେକାରୀ ସ୍ୱର,
ଆମ ଇସ୍ପାତ ଆମ ମେହନତ ତୋଳିବ ବିଦେଶୀ ଘର ।
ଆମେ ଶଙ୍କିତ ଆମେ ନିଷ୍ପେସିତ ଆମେ ଆଜି ହୀନବଳ ।
ବେଳା ଭୁଇଁ ପରେ ପ୍ରକଳ୍ପ ଦେଉଛି ସାକ୍ଷୀ-
ସାମନ୍ତ ସନ୍ତାନ ଆମେ ପରମୁଖାପେକ୍ଷୀ ॥
ଆମେରେ ଓଡ଼ିଆ ଜାତି ।
ବନ୍ୟା-ମରୁଡ଼ି ଆମରି ଜୀବନ ସାଥୀ
ପଛୁଆ ଆମେରେ ହିଡ଼େ ଲଦି ହିଡ଼ ମାଟି ॥



# ସାଂପ୍ରତିକୀ

ଉଡ଼ିଯା ରେ ଯା ଉଡ଼ି ମୋ ଆଦର ର ପ୍ରାଣପକ୍ଷୀ
ଦୂର ସରଗରେ କହିବୁ ଖବର ଏଠି ଯା ଦେଖୁଛୁ ନିତି ।।
ନାହାନ୍ତି ପଟେଲ ଲାଲ, ବାଲ, ପାଲ, ବାପୁଜୀ, ନେତାଜୀ, ଶାସ୍ତ୍ରୀ ।
ସ୍ୱାଧୀନ ସଂଗ୍ରାମୀ ବୀରର ଧମନୀ ଆଉତ ଉଠେନା ତାତି ।
ନେହୁର, ଇନ୍ଦିରା, ରାଜୀବଙ୍କ ନାମ ଭୁଲିଲେଣି ଦେଶ ଜାତି ।
ବସେ କମିଶନ ବତିଯାଏ ଦିନ ଦୋଷୀ କି ମିଳେନା ଶାସ୍ତି ।
ନାରୀ ନିର୍ଯ୍ୟାତନା ଯୌତୁକ ବେଦନା ଧର୍ଷଣ ଶୋଷଣ ଭର୍ତ୍ତି ।
ବାଣିଜ୍ୟ ବୟାନ ନଗ୍ନ ବିଜ୍ଞାପନ ନଷ୍ଟ କରେ ଭାବମୂର୍ତ୍ତି ।।
ଦୁର୍ଘଟଣା ସ୍ଥଳେ ପୋଡ଼ା ଜଳା ଚାଲେ ଲାଠି ଗୁଳି ହୁଏ ବୃଷ୍ଟି ।
ଶାସନ ଗାଦୀର ମୋହରେ ପାଗଳ ନେତାଏ ପଡ଼ନ୍ତି ଝୁଣ୍ଟି ।
ଦାଉଦ୍, ବୀରାପନା, ଚନ୍ଦ୍ରସ୍ୱାମୀ ଜୈନ୍ୟ ଅନ୍ତହୀନ ଜାଲିଆତି ।
ବୋମା ବିସ୍ଫୋରଣ ଅପହରଣ ଓ ପଣବନ୍ଦୀ ଦିଏ ଭୀତି ।।
ଗୁପ୍ତଚର ଖୋଜେ ସେଁ ନିଜ ସାଜେ ସୀମାନ୍ତରେ ଦିବାରାତ୍ରି ।
କିନ୍ତୁ ନିର୍ଭୟରେ ଦିନ ଦିପ୍ରହରେ ଭ୍ରମୁଥାନ୍ତି ଉଗ୍ରପନ୍ଥୀ ।।
କୋଟି ପତି ହୁଏ ହର୍ଷଦ ମେହେଟ୍ଟା ଲୁଟି ନେଇ ପ୍ରତିଭୂତି ।
ବନ୍ୟା ମରୁଡ଼ିରେ ଫସଲ ଉଜୁଡ଼େ ଚାଷି ମରେ ମଥା ପିଟି ।।
ସ୍ୱନାମ ଧନ୍ୟ ଆମ ଗଣତନ୍ତ୍ର ସ୍ୱାଧୀନ ଭାରତ ମାଟି ।
ଯୁଗଯୁଗାନ୍ତରୁ ଲୁପ୍ତ ତରାଜର ଗନ୍ତାଘର ପାଲଟିଛି ।।



# ଉଜୁଡ଼ା ଆଜି ମୋ ଘର

ଯାର ବି ଥିଲା ବୁନିଆଦୀ-ଖାନଦାନୀ-
ମାନଧାତା ଅମଳର । କିନ୍ତୁ-----
ଆଜି ଯାହା ଅଛି, ଦରଭଙ୍ଗା ହେଲେ ବି,
ଯେତ ସେହି କାଳର ଘର ।
ପାଞ୍ଚ ବର୍ଷରେ ଥରେ ହେଉଛି ଛାଉଣୀ ଛପର ।
ଅବଶ୍ୟ କୃଷିନାମା ବିନା ବୁଝି ହେଉନି,
ଇଏ କେଉଁ ସ୍ଥିତିବାନ ରୟତର ॥
କାନ୍ଥରେ ଫାଟ ଦେଖା ଗଲାଣି,
ଏବଂ ସେ ବାଟେ, ଯା ଆସ କଲେଣି-
ମୂଷା,ଚେମଣିଆ, ଗୋଧି, ଏଣ୍ଡୁଅ ଇତ୍ୟାଦି,
ଜବରଦସ୍ତ ସଂଘର ସଭ୍ୟଗୁଡ଼ା ।
ଯେଉଁମାନେ ଦିଅନ୍ତିନି ଆପଣାଛାଏଁ ଧରା ।
ଚାଲିଛି ବତାଭିଡ଼ା । ତାଥାପି ଅଧେ-
ଉଡ଼ିଯିବାକୁ ବସିଲାଣି ମୁଳଗଡ଼ି ନଡ଼ା ।
ଅବଶିଷ୍ଟ ଓଟାରି ଖାଇବାକୁ-
ବୁଲାଗୋରୁମାନେ ହେଲେଣି ଧରାପରା ।
ସମଗ୍ର ବିଶ୍ୱ ପାଇଁ ଏ ଦୁଆରଟା ସାହାଣା ମେଲା ।
କୁକୁର ଶିଆଳ ଓ ମଶାମାଛି ଦିଅନ୍ତି ପହରା ।
ବାଘର ହେଣ୍ଟାଳ ଶୁଭିଲାଣି ନୁଖୁରା ନୁଖୁରା ।

ଇତିହାସ ଟିପି ରଖୁଛି କିଏ ଆସିଲା କିଏ ଗଲା ।
ଅଦାଲତ ସଫା କରୁଛି ଅଳନ୍ଧୁ ମଇଳା ।
ସମୟର ଗମ୍ଭୀରି ଗୁହାରେ-
ଚାଲିଛି ହିସାବ ନିକାଶ ଧାରା ।
ଧର୍ମ, ରାଜନୀତି ନ୍ୟାୟ ନୈତିକତା ଓ ସଂସ୍କୃତି,
ସବୁରି ସ୍ୱର ଲାଗେ ବେସୁରା ବେସୁରା ।
ସାମନ୍ତବାଦୀମାନଙ୍କ ପ୍ରଭାବରେ-
ପ୍ରଗତୀବାଦୀ ପାଲଟି ଲେଣି ବୁଢ଼ା ।
ବୟସର ନଇ ତୁଠ ଏଠି ଅବାଟ ଅତଡ଼ା,
'ବେଣ୍ଟ ଆମିଷ ଚଟୁ ନିରାମିଷ' ନୀତିରେ---
ଆରମ୍ଭ ହେଲାଣି ଅପସଂସ୍କୃତିର ସୁଆଙ୍ଗ ଆଖଡ଼ା ।
ଏଘରର ନୀତି ନିୟମ ଥିଲା କାଳେ କଡ଼ା,
ଏବେ ଏଘରର ଲୋକମାନେ ବଦଳି ଲେଣି-
ଦଳେ ଉଗ୍ରବାଦୀତ, ଆଉଦଳେ ଧର୍ମଭୀରୁ ଡରକୁଳା ।
ସ୍ତ୍ରୀମାନେ ଥିଲେ ବୀରାଙ୍ଗନା ଚତୁରୀ ଚଞ୍ଚଳା,
ଏବେ କିନ୍ତୁ ହେଲେଣି ଲଙ୍ଗଳା ।
କେହି କେହି କହନ୍ତି ଜନସଂଖ୍ୟା, ବେକାରୀ ଓ
ଋଣ ଭାର ବୃଦ୍ଧି ହେଲା ।
ବୁଝିବା ଲୋକେ କହନ୍ତି :
ଏ ଘରେ ଚାଲିଛି ତୋଷର ପାତ ପାଲା ।



# ଅନୁଚିନ୍ତା

ଆଜି ଯେ ନିଆଁ ଚଳୁଛି । କୁମାରୀକାରୁ ହିମାଳୟ ଯାଏ,

ଗ୍ରାମରୁ ସହର, ଚଳନ୍ତା ଗାଡ଼ିରୁ ମହାନଗରୀ ଯାଏ,

ବ୍ୟକ୍ତି ପରିବାର ଜାତି ଧର୍ମ-

ପ୍ରତି ଅନୁଷ୍ଠାନ କୁ ଧ୍ୱଂସ ମୁଖୀ କରିଛି ।

ସେ ନିଆଁ ବି ଦିନେ ଥିଲା ଦେବାତାର

ପୂଜା ଦୀପାଳିରେ,

ଆଶୀର୍ବାଦର ବାର୍ତ୍ତା ବହହୋଇ ।।

ଆଜି ଯେ ଉଚ୍ଛୃଙ୍ଖଳତା/ଅସାମାଜିକତା, ତଥା-

ବର୍ବରତାକୁ ପାଥେୟ କରି, ଦଙ୍ଗା, ହେଙ୍ଗାମା ଚାଲିଛି,

ଜାତିର ସନ୍ତାନ ସନ୍ତ୍ରାସବାଦୀ ପାଲଟିଛି ।

ସେ ବି ଦିନେ ଥିଲା ଜନନୀ ଅଞ୍ଚଳ ତଳେ

ସ୍ନେହ ମମତାର ପ୍ରତୀକ ହୋଇ ।।

ଆଜି ଯେ ଦେଶ ସେବା ନାମରେ/କ୍ଷମତା ଲାଳସାରେ,

ଭୋଟ୍ ବ୍ୟବସାୟ କରୁଛନ୍ତି ।

ଲୋମ ହର୍ଷଣକାରୀ ଗୁଣ୍ଡାରାଜକୁ ପ୍ରଶ୍ରୟ ଦେଉଛନ୍ତି ।

ସେମାନଙ୍କ ମଧ୍ୟରୁ ଅଧିକାଂଶ ବି-

ସ୍ୱାଧୀନତା ପ୍ରେମୀ,

ସଂଗ୍ରାମୀ ତଥା ଅମର ଶହୀଦର ସନ୍ତାନ ।

ଆଜି ଯେ ଅବସରପ୍ରାପ୍ତ ବୟସ୍କ, ଅନୁତାପ କରୁଛି ।
ସୁଖ ଶାନ୍ତି ମୈତ୍ରୀ ଓ ମମତା ପାଇଁ କାଙ୍ଗାଳ ସାଜିଛି ।
ସେ ବି ଦିନେ ଥିଲା ମହା ପରାକ୍ରମ ଶାଳୀ ।
ବୀର ସୈନିକ/ପୋଖତ ରାଜନୀତିଜ୍ଞ/ଦେଶପ୍ରେମୀ/ସମାଜନ ସେବକ ।।
ଆଜି ସେ କଂକାଳ ସାର ହେଲେ ବି, ତାର ସବୁଜ ଅତୀତ କୁ-
କେହି କେବେ ଅସ୍ୱୀକାର କରି ପାରିବ ?
ସେ କ'ଣ ଚାହିଁଥିଲା, ତା କୋଳର ସନ୍ତାନ-
ଲୁଣ୍ଠନାକରୀ/ହତ୍ୟାକରୀ/ଧର୍ଷଣକାରୀ ଏବଂ---
ଦେଶ ଦ୍ରୋହୀ ହେଉ ବୋଲି ?
ସେ କଣ ଚାହିଁଥିଲା ତାର ଉତ୍ତର ଦାୟାଦ ମାନେ---
ତା ବଂଶରେ କଳଙ୍କ ବୋଲିବେ ବୋଲି ??
ଜାତୀୟତା ବୋଧରେ ଗର୍ବିତ/ଗୌରବାନ୍ୱିତ ତଥା-
ଜାତୀୟ ପ୍ରେମରେ ଉତ୍‌ଫୁଲ୍ଲିତ ହେଲାବେଳେ,
ସେ କଣ କଳ୍ପନା କରିଥିଲା, ତାର ଦେବଶିଶୁ ଦିନେ
ଦାନବର ରୂପ ଗ୍ରହଣ କରିବ ବୋଲି ?



# ସମାଜ ବାଦ ବନାମ ଭୋଗବାଦ

ହଜିଗଲା ୫୦ ବର୍ଷ ତଳର ଯେତେ ସବୁଚିନ୍ତା,
ଗାନ୍ଧୀବିନୋବା ଆଦର୍ଶ, ସ୍ୱାଧୀନ ଭାରତବର୍ଷ,
ଶୋଷଣ ହୀନ ସମାଜବାଦର ଆଦର୍ଶ ।
ଆଜି ଖାଲି ଆରିଆଡ଼େ ହରତାଳ ବନ୍ଦରାଜରାସ୍ତା ।
ଆସେ ଯେବେ ମରୁଡ଼ି କି ଅବା ବନ୍ୟା ବତ୍ୟା
କଳା ଧନେ ଧଳା କୋଠା ତୋଳେ ରାଜନେତା ।
ଛୁଇ ଜଳେ, ଯଉତୁକ ନିର୍ଯ୍ୟାତିତା ନବବଧୂ ହତ୍ୟା
ଏହା କଣ ଗଣତନ୍ତ୍ର ସମାଜବଦାର-
ସୁବର୍ଣ୍ଣ ଜୟନ୍ତୀ ସ୍ୱାଧୀନତା ?
ଗରିବ ହଟାଅ ଧ୍ୱନି ଦେଉଛନ୍ତି ଧନୀ
ଦିନୁ ଦିନ ବୃଦ୍ଧି ହୁଏ ଖୁନୀ ରାହାଜାନୀ
ଉଦାରୀକରଣ ବନାମ ଘରୋଇ କରଣ
ବିଦେଶୀ ବେପାରୀଙ୍କର ବଢ଼ାଏ ସମ୍ମାନ
ସଂବିଧାନ ନବୀକରଣର
ଏବେ ପୁଣି ଶୁଭୁଛି ବୟାନ
ଦେଶବାସୀ ହେଉଥାନ୍ତି ଯନ୍ତି,
ବନ୍ୟାବାତ୍ୟା ମରୁଡ଼ିକି ସାମ୍ନାକରି
କୃଷକଟି ମରୁଥାଉ ପଛେ ଖଟି ଖଟି
ଶୀତ ତାପ ନିୟନ୍ତ୍ରଣେ-
ରହିଥାନ୍ତୁ ଆମନେତା ମନ୍ତ୍ରୀ ।।
ଜନସେବା ନାମେ ସ୍ୱାର୍ଥ ସେବା, ଥରେ ଗାଦି ମିଳିଗଲେ-
ଆଜୀବନ ଭତ୍ତା ପାଉଥିବା ।
ଏହି ସ୍ୱପ୍ନ ବୋଧହୁଏ ଦେଖିଥିଲେ,
ସେ ଯୁଗର ଗାନ୍ଧୀ ଓ ବିନୋବା ।।
ରାମରାଜ୍ୟ ଗ୍ରାମର ସ୍ୱରାଜ
ଘୋଷେ ଯାହା ଖବର କାଗଜ ।।
ଭୋଟ ପୂର୍ବେ କଥା ଗୋଟେ ଭୋଟ ପରେ ଆନ୍ [illegible]ାଟେ କାର୍ଯ୍ୟ ।।

ପ୍ରଦୂଷଣ ସଂକଟ ଘେରରେ
ଛଟପଟ ହେଉଥାଉ ମାନବ ସମାଜ
ନିର୍ବାଚନ ମେଣ୍ଟ ଆସନର ଭାଗବଣ୍ଟା ପାଇଁ
ମନ୍ତ୍ରୀ ହେଉଥାନ୍ତି ସଜବାଜ ।।
ରାଷ୍ଟ୍ରୟତ୍ତ ଉଦ୍ୟୋଗରେ ପଡ଼ିଯାଉ ତାଲା
ପ୍ରଶାସକ ହୋଇଯାନ୍ତୁ ମନ୍ତ୍ରୀଙ୍କର ଚେଲା
ବୃଦ୍ଧି ହେଉ ବିମାନ ଦୁର୍ଘଟଣା
ଅବା ବନ୍ଦୀଦସ୍ୟୁ ମୁକ୍ତି, ପାଲା
ବିମନ ଅପହରଣ କୁଖ୍ୟାତ ମାମଲା ।।
''ଉଠ କଂକାଳ ଜାଗ'' ଜନ ଜାଗରଣ ଆହ୍ୱାନ-
ସ୍ୱାଧୀନତା ସଂଗ୍ରାମରେ ସିନା ମୁଖ୍ୟ ଥିଲା ।
ଏବେ କିନ୍ତୁ ଉଗ୍ରପନ୍ଥୀ ପାଇଁ ଆବଶ୍ୟକ-
କାଶ୍ମୀର କାରଗିଲ୍ ସୀମାନ୍ତଟା ଖୋଲା ।।
ଭର୍ତ୍ତିହେଉ ଆକାଶଟା ସାରା
ଇଂଜିନ୍ ଓ ଚିମିନ୍ର ଧୂଆଁ
କଟାଉ ଜଙ୍ଗଲ ବା
ଗଢ଼ିଉଠୁ ଶିଳ୍ପ ନୂଆ ନୂଆ ।
ମହାବାତ୍ୟା ପରେ ଜଳୁ ଅଂଶୁଘାତ ନିଆଁ ।
ରାଜଧାନୀ ପଥପ୍ରାନ୍ତେ ଥିବ ଯେବେ ଗାଡ଼-
ପୂର୍ଣ୍ଣ ହେଉ ପଡ଼ିତହିଁ
ଖଟିଖିଆ ଶ୍ରମିକଙ୍କ ହାଡ଼ ।
ଚା' କପେ ଅବା ମଦ ଢୋକେ-
ପିଇ ଦଣ୍ଡେ ଜୀଇଁ,
ବୃଥା ଆଉ ନବୁଲନ୍ତୁ ଦୁଷ୍ଟମାନେ ଭୁଆଁ ।
ନିର୍ବାଚନେ ଗଣା ହେବା ଲାଗି
ନ ରହନ୍ତୁ ରାମା ଶାମା ନିଧିଆ ମାଧିଆ ।
ହାତୀଦେବି ଘୋଡ଼ା ଦେବି ରାମ ରାଜ୍ୟ ଗଢ଼ିଦେବି
ଶୁଣି ଶୁଣି ନ ହୁଅନ୍ତୁ କେହିବି ଛାନିଆଁ
ଗଢ଼ିବାକୁ ଛାଡ଼ି ଦିଅ ତାଙ୍କୁ
ସମାଜ ବାଦ ନାମରେ,
ଭୋଗବାଦ ଦେଶ ମୂଳଦୂଆ ।।

□□□

# ଜାତୀୟ ଶପଥ

ଗୌରବମୟ ଇତିହାସ ସତ୍ୟ ମୋ ଜାତିର ଇସ୍ତାହାର ।
କରିଛି ଶପଥ ରଖିବି ନିୟତ ଯଶକୀର୍ତ୍ତି ଯାହାଚାର ॥
ମାତୃଭୂମିର କୋଳରେ ଜନମି କେତେ କାଳ-ଜୟୀବୀର
ଜାଳିଲେ ସଂଗ୍ରାମୀ ମଶାଲର ବହ୍ନି ଘୋଷି ଜୟ ଜୟକାର
ଆକୁଳତା ଭରା ଅଭୁଲା ଅନ୍ତର ଝୁରେ ତାହା ବାର ବାର ॥
ଜାଗୁସେ ଚେତନା ମୋ ଜନ ଜଗତେ ପୂର୍ଣ୍ଣ ହେଉ ଶୂନ୍ୟ କାଳ
ବୀରର ଲହୁ ଭୁଲିବ କେମନ୍ତେ ଅମର ଶହୀଦ୍ ଗିର
ତେଣୁ ପୂଣ୍ୟ ଭୂଇଁ ରହିଛି ଅନାଇଁ ସେହି ଦିଗେ ନିରନ୍ତର ॥
ରକ୍ତ ରେଖାରେ ଲେଖୁଛି କବିତା ଯୋଗେଁ ପହାର
ଈଶ୍ୱର ପାଦରେ ନୁଆଇଛି ମଥା ଅରପିଛି ପୂଜା ଫୁଲ
ମାନବ ସଂବଳ ଭରସା କେବଳ ଈଶ୍ୱରୀୟ ଆତ୍ମବଳ ॥
ବହିଲେ ବହିବ ପ୍ରଳୟ ମରୁତ ଖୋଲି ମରଣର ଦ୍ୱାର
ତଥାପି ନହେବ ସତ୍ୟ ପରାହତ ସ୍ରବିଲେ ବି ଅଶ୍ରୁଧାର
ଜଳିଲେ ଜଳିବ ମୋ ଚିତା ଅନଳ ପାତିବିନି ଭିକ୍ଷା ଥାଳ ॥



# ପ୍ରଳୟ ବି ସୃଷ୍ଟି ନିୟାମକ

ଭୂମିଠାରୁ ଭୂମା ଯାଏ ପରିବ୍ୟାପ୍ତ ବିଶ୍ୱେ ।<br>
ଜୀବ ଯେବେ ଜନ୍ମ ନିଏ, ଶିବ ସ୍ୱର ଘୋଷେ ।।<br>
ଏକୋଽହମରୁ ବହୁଷ୍ୟାମ୍ ଈଶ୍ୱର ନିର୍ଯ୍ୟାସେ ।<br>
ସୃଷ୍ଟି ନିତ୍ୟ ନିୟାମକ ସଂସାର ବିକାଶେ ।।<br>
ଶବ ବି ପାଲେଟେ ଶିବ ଶକ୍ତିର ବିନ୍ୟାସେ ।<br>
ଜଡ଼ରେ ଚିନ୍ମୟ ଭାବ ପ୍ରକଟ ଅଭ୍ୟାସେ ।।<br>
କିନ୍ତୁ ମହାକାଳ ଗତି ଚିରନ୍ତନ ତ୍ରାସେ ।<br>
ବିଳୟ ସକଳ ଶାନ୍ତି ପ୍ରଳୟ (ମୃତ୍ୟୁ) ପ୍ରବେଶେ ।।

\+ \+ \+ \+

ସଂପ୍ରତି ମହାପ୍ରଳୟ ସୂଚନା ପ୍ରକାଶେ ।<br>
ଦୁର୍ଗତି ଭରା ନୀଳୟ ଯୁଗାନ୍ତ ସନ୍ଦେଶେ ।।<br>
ଅବିଦ୍ୟା କୃତ ସମ୍ଭାର ଧ୍ୱଂସ ଅବକାଶେ ।<br>
ଅପ ସଂସ୍କୃତି ଜଞ୍ଜାଳ ସଂହତି କି ଗ୍ରାସେ ।।<br>
ପରିବଶେ ପ୍ରଦୂଷଣ ଧରିତ୍ରୀ ସନ୍ତ୍ୟାସେ ।<br>
ଅଗତ୍ୟା ବର୍ଣ୍ଣ ଶଙ୍କର ସୃଷ୍ଟି ଧର୍ମ ନାଶେ ।<br>
ପ୍ରଳୟ ପୟୋଧି ସୁର ପୁରକୁ ଆକେର୍ଷେ ।।<br>
ନବ ଯୁଗ ବିବର୍ତ୍ତନ ଜୀବନ ଆଶ୍ୱାସେ ।।<br>
ଉତ୍କଣ୍ଠିତ ଜନଗଣ ବିଷାଦ ମାନସେ ।<br>
ବ୍ୟକ୍ତି ପରିବାର ଗୋଷ୍ଠୀ ଭୀତ ତ୍ରସ୍ତ ବେଶେ-<br>
ସମାଜ ସଂସ୍କାର ବ୍ରତୀ ଭ୍ରମେ ଦେଶେ ଦେଶେ ।।<br>
ପରମାଣୁ ସଂରକ୍ଷିତ ଶାସକ ନିର୍ଦ୍ଦେଶେ ।<br>
ସେନା କିନ୍ତୁ ଆତଙ୍କିତ ସୀମାନ୍ତ ପ୍ରଦେଶେ ।।<br>
ଅଭିନବ ଅଧ୍ୟୟନ ପ୍ରଳୟ ଉଦ୍ଦେଶ୍ୟେ ।<br>
ହିମାଳୟ ଅବକ୍ଷୟ ବିସ୍ମୟ ଭବିଷ୍ୟେ ।।



# ନବବର୍ଷର ସୁ ପ୍ରଭାତ

ଡିସେମ୍ବର ଏକତ୍ରିଶ ମଧ୍ୟ ରାତ୍ରରୁ-
ଜାନୁଆରୀ ଏକ ତାରିଖର ବ୍ୟବଧାନ,
ଇତି-ଶ୍ରୀର ପାର୍ଥକ୍ୟ ବୋଧରେ-
ମାତ୍ର ଶେଷ ରାତ୍ରର ଦୁଇଟି ପ୍ରହର ।
କାଳ ବିବର୍ତ୍ତନ ପରମ୍ପରା ଅନୁଯାୟୀ-
ପୃଥିବୀ ପୃଷ୍ଠକୁ ଅବତରୀ ଆସେ,
ନୂତନ ବର୍ଷର ପ୍ରଥମ ସକାଳ ।
ରଙ୍ଗୀନ ସ୍ୱପ୍ନର ପିଆଲାଟିଏ କିମ୍ବା-
ଧରିତ୍ରୀରେ ସଦ୍ୟଜାତ ଶିଶୁଟିଏ ଭଳି
ଉଷା ଅବସରେ ଉଇଁଆସେ-
ନବ ବର୍ଷ ସୁପ୍ରଭାତର ସୂର୍ଯ୍ୟ ॥

\+ \+ \+ \+

ସମସ୍ୟାର ଘେରରେ ତଥା-
ସନ୍ତୁଳିତ ମାନବ ସମାଜରେ
ଏବଂ ସମଗ୍ର ଜୀବ ଜଗତରେ-
ଗୁଞ୍ଜରଣ ସୃଷ୍ଟି ହୁଏ
ସେହି ମୂହୁର୍ତ୍ତ ଗୁଡ଼ିକରେ ।
ଆବେଗ ଲହରୀ ଖେଳେ-
ସମୟ ସାଗର ବେଳରେ,
ସଂସାରର ସମସ୍ତ ଜଡ଼ମାନେ-
ଜାଗ୍ରତ ହୁଅନ୍ତି ଚେତନାରେ ॥
ଭାବଗତ ସାମଗାନ ମୁଖରୀତ ହୁଏ
ଧରା ବୁକୁରେ ଗଗନ ମନରେ ଉଙ୍କିମାରେ-
ଦୂର ଅତୀତ ର ଚିତ୍ର ।
ସତେ ଅବା ଅବତୀର୍ଣ୍ଣ ହୁଅନ୍ତି ଈଶ୍ୱରଙ୍କ ପୁତ୍ର ।
ସେ ହେଉ ସହସ୍ରାବ୍ଦ ବା ଶତାବ୍ଦୀର
ମହିମାମୟ ସୁ-ପ୍ରଭାତ । କିନ୍ତୁ ସେ-
ପ୍ରଭୁଯୀଶୁଙ୍କ ନାମରେ ହୋଇ ଉଠେ ।
ଅମଳିନ ଶୁଦ୍ଧ ଓ ପବିତ୍ର ॥

# ଚକୋରୀର ମର୍ମବାଣୀ

ମୋ ମଥାରେ ଉପେକ୍ଷିତାରେ ମୁକୁଟ ପିନ୍ଧେଇ,
ଏବଂ ବ୍ୟଭିଚାରିଣୀ ପଦବୀରେ ଭୂଷିତ କରେଇ,
ତୁମେ ଯେବେ ପୌରୁଷ ଓ ପଦ ମର୍ଯ୍ୟାଦାର
ପର୍ବତ ଆରୋହଣ କଲ !
ଅବିଶ୍ୱାସର ଝଡ଼ ଟା, ଟୁକୁରା କାଗଜପରି-
ଉଡ଼େଇ ନେଲା, ସ୍ନେହ ମମତା ଭରା ଟିକି ନୀଡ଼କୁ ।
ସନ୍ଦେହର କଳାଛାଇ ଘୋଟିଗଲା-
ପରିବାର ବର୍ଗଙ୍କ ମନ ଆକାଶରେ ପଡ଼ୋଶୀଙ୍କ କଣ୍ଠରେ ଭଗାରୀ ହସାର ସ୍ୱରର
ଚାପା ଗୁଞ୍ଜରଣ, ଆନ୍ଦୋଳିତ ଘୂର୍ଣ୍ଣିବାତ୍ୟାର ରୂପନେଇ
ସଞ୍ଚରିଗଲା ହୃଦୟରୁ ହୃଦୟକୁ ।
ଗ୍ରାମରୁ ସହରକୁ, ଦେଶରୁ ବିଶ୍ୱକୁ ।।

ବୁକୁର କୋହ ଏବଂ ଅଶ୍ରୁର ତରଙ୍ଗ
ଦଳି ଚକଟି ଦେଲା, ସଂସାରୀ ମୋହ ମାୟାର
ପିରାମିଡ଼କୁ । ଭୁଷୁଡ଼ି ପଡ଼ିଲା ସ୍ୱପ୍ନର ମୀନାର ।
ଆଶା ଆଷାଢ଼ର ଇନ୍ଦ୍ରଧନୁ ମିଳେଇ ଗଲା-
ଶୀତ କାତର ର ଉହ୍ଲେଇ ଧୂଆଁରେ ।।

ବଞ୍ଚିବାର ରାହା ଖୋଜି ପାରିନଥିବା-
ଶାବକ ମାନେ,
ଆକସ୍ମିକ ଦୁର୍ଘଟଣାର ଶିକାର ହେଲେ ।
ବୟସର ମାପ କାଠିରେ, ସମୟର ସୀମାକୁ-
ମାପିବାର ଦୁଃସାହସ ନେଇ, ମୁଁ କେବଳ ଚାହିଁଛି ମାତ୍ର ।
କିଏ ମୋତେ ଫେରାଇ ଦେବ ମୋ କୁମାରୀ ଜୀବନ ?
କିଏ ଦେବ ଶାନ୍ତ୍ୱନା ସାମାଜିକ ଯନ୍ତ୍ରଣାରେ ?
କିଏ ଦେଇ ପାରିବ ମୋତେ ବୟସର ମର୍ଯ୍ୟାଦା-
ସଂପ୍ରାତିକୀ ସମାଜ ନା ଉତ୍ତରଦାୟାଦ ମାନେ ? କିଏ ???



# ନାରୀ ଡାକେ ଆସ ଆର୍ତ୍ତତ୍ରାଣ

ଯୁଗ ଜନ ସମାଜ ସାଗରେ-
'ନାରୀ' ମୁଁ ଯେ ପାଲଟିଛି ମୀନ ।
ଅଗଣିତ ମତ୍ସ୍ୟରଙ୍କା ମାନେ-
ଦେଖନ୍ତି ମୋ ଦେହର ଦୋଳନ ।
ଓଉରଣ୍ଡି ଝାମ୍ପି ନେବା ପାଇଁ,
ମୋ ଲାଗି ବେଳାଭୂଇଁ, ହୁଏ ଲୋକାରଣ୍ୟ ।
ଦୁର୍ନିବାର ସେମାନଙ୍କ-
ଅନ୍ୱେଷଣ ଏବଂ ଆକର୍ଷଣ ।
ସ୍ୱାଧୀନତା ଛପନ ବର୍ଷର-
ମୋ ଜାତି ଟା ସଦା ପରାଧୀନ ।
ଆଶଙ୍କାରେ ମୋ ବୁକୁ ବିଦୀର୍ଣ୍ଣ,
ଭ୍ରଷ୍ଟାଚାରୀମାନଙ୍କ ଦଂଶନେ-
ଯୌତୁକ ବ୍ୟାଧିରେ ଏବଂ,
ଧର୍ଷଣ ସମାଧିରେ-
ଧ୍ୱଂସ ଆଜି ମୋ ଜାତିର-
ଜୀବନ-ଯୌବନ-ସ୍ୱାଭିମାନ ।।
ଦୁଃଶାସନ କବଳରେ-
ପୁରାଣ ପାଞ୍ଚାଳୀ ସମ,
ଥାଉ ଥାଉ ପିତାମହ ଅବା-
ବୟୋଜ୍ୟେଷ୍ଠ ଗୁରୁଦ୍ରୋଣମାନେ,
ସ୍ୱଳୁରି ସାମ୍ନାରେ ମୁଁ ଯେ ହେଉଛି ଉଲଗ୍ନ ।।
ରଖିବାକୁ ଜାତି କୁଳଧର୍ମ ଓ ସମ୍ମାନ,
କରଯୋଡ଼ି ଜଣାଏ ପ୍ରଣାମ ।
କାହିଁଅଛି ପାର୍ଥ-ସଖା-କୃଷ୍ଣ,
ଅବତରି ଆସ ଥରେ, ତବ ଅନୁଶାସନରେ
ଦୁଷ୍କୃତ ବିନାଶରେ-
ସତୀ ସାଧ୍ୱୀ ଲଭୁ ପରିତ୍ରାଣ ।।



# ପ୍ରତୀକ୍ଷା ପଲ୍ଲୀବଧୂର

ତୁଳସୀ ଚଉରା ମୂଳେ-
ଜଳାଇ ସଳିତା ଟିଏ ।
ତୁମରି ଶୁଭ ମନାସି-
ନିତି ମୁଁ ଜୁହାର ହୁଏ ।।
ନାହିଁ ସିନା ପୂଜାଫୁଲ ଅର୍ଘ୍ୟଥାଳି,
ବନ୍ଦନା ଗାଏ ମୋର ମାନସେ ଭାଳି ।
ମୋ ଜୀବନ ଯମୁନାରେ
କାମନା ଲହରୀ ଖେଳେ
ସଂସାରର ପଥଧାରେ-
ଅଶେଷ ଲାଞ୍ଛନା ସହେ ।।
ଯାତନାର ଗନ୍ତାଘର ଶରୀର ମୋର,
ମରଣର ଅନ୍ୱେଷାରେ ଖୋଲିଛି ଦ୍ୱାର ।
ତୁମ ଯଶ ଗଉରବ,
ପୁଜ୍ୟପୂଜା ବଇଭବ
ମୁକତିର ସଉରଭ
ଯାଚେନା ଜଗତେ କିଏ ।
ନିତି ମୁଁ ଜୁହାର ହୁଏ ।।
ପ୍ରେମ ସିନ୍ଧୁ ବେଳା ଭୁଇଁ ଛୁଇଁବା ପାଇଁ,
ସାହାରା ଦେବାକୁ କେହି ମୋ ପାଶେ ନାହିଁ ।।
ମାନ ସମ୍ମାନ ଧନ, ଅର୍ଜନେ ନାହିଁ ମନ-
କାମନା ଭରା ନୟନ ତୁମରି ଦର୍ଶନ ଚାହେଁ ।।
ଜଳାଇ ସ...ତା ଟିଏ-
ନିତି ମୁଁ ଜୁହାର ହୁଏ ।।



# ତୋ-ମୋ-ସଂପର୍କ

ଆମ ଭଲ ପାଇବାର ପ୍ରତିଶ୍ରୁତି-
ସଦିଚ୍ଛା ସହାନୁଭୂତି, ସବୁତ ତୁ କେମିତି ଭୁଲି ଯାଉଛୁ ଯେ-?
ତୋ ହୃଦୟର ଅନ୍ୱେଷଣ କ'ଣ-
ଶାଶ୍ୱତ ପ୍ରେମକୁ ଅନୁଭବ କରି ଶିଖିନାହିଁ ?
ଆମେ ଶପଥ କରି ଥିଲେ ପରା । ଆମ ଭିତରେ-
ଯେତେ ଝଡ଼ ଉଠିଲେ ବି, ପରସ୍ପରକୁ ଭୁଲ୍ ବୁଝିବା ନାହିଁ ବୋଲି ।
ତେବେ କହ, ତୁ କାହିଁକି ଆମ ପବିତ୍ର ସଂପର୍କ କୁ-
କଳୁଷିତ କରୁଛୁ ? ମୁଁ ଜାଣେ-
ନିଜ ଦୋଷକୁ ଅନ୍ୟ ଉପରେ ଲଦି ଦେବା-
ଅଭ୍ୟାସ ତୋର ଅଛି ।
ଏହା ଜାଣି ମଧ୍ୟ ମୁଁ ତୋ ସହ, ପ୍ରେମ ସଂପର୍କ ରଖିଛି ।।

\+ \+ \+ \+

ଆଭିଜାତ୍ୟର ଅହମିକା ନେଇ
ତୁ ମୋତେ ପ୍ରତାରକ ନଭାବି, ପ୍ରିୟତମ-
ସଂବୋଧନ କରିବାକୁ ମୁଁ ପ୍ରତୀକ୍ଷା କରିଛି ।।
ତୁ ସିନା ଭୁଲ୍ କରି ଚାଲିଛୁ !
କିନ୍ତୁ ମନେ ରଖ ! ଏମିତି ଏକ ଦିନ ଆସିବ,
ଯେଉଁଦିନ ତୁ ନିଜେ ହିଁ ନିଜର ବ୍ୟର୍ଥତାର କାରଣ ହେବୁ ।
ସେ ଦିନ ମୋର ବିନ୍ମୟ ସତ୍ତା-
କାରଣ ଅବୟବ ଧରି ବିଚରଣ କରିବ । (ଆଷ୍ଟ୍ରଲବଡ଼ି)
ତୁ ଯଦି, ମୋ ଅନୁଭୂତି କୁ ଉପଲବ୍ଧି କରିପାରୁ,
ତେବେ ବୁଝିବୁ ଯେ-
ଏ ଜଗତ କେବଳ 'ମୋର' ଆଉ 'ମୁଁ' ର ଲୀଳା କ୍ଷେତ୍ର ।।



# କ୍ଳାନ୍ତ କବି ମାନସ ମୟୂରୀ

କଳ୍ପନା ଆକାଶରେ ଶବ୍ଦ ସବୁ ଭାସି ବୁଲେ-
ଶରତର ମେଘ ଖଣ୍ଡ ଭଳି ।
ଯଦି କେବେ ଯୋଡ଼ି ହୁଏ ଅଦିନ ବତାସେ-
ଢାଳି ଦିଏ କବିତାର ବାରୀ ।।
କେତେ ବେଳେ ଅନ୍ତର ସାଗରେ
ଘନୀଭୂତ ହେଲେ ସେହି ବାରି ।
ଭିଜିଯାଏ ବୁକୁ ବେଳା ଭୂଇଁ-
ସକରୁଣ ମୂର୍ଚ୍ଛନାରେ ଖେଳିଯାଏ ବ୍ୟଞ୍ଜନା ଭଉଁରୀ ।।
ସନ୍ତୁଳନ ହୃଦୟ କେଦାରେ
ଘୋଟେ ଯେବେ ସଂଦେହର ଅମା ।
ତମସାରେ ଲୁଚିଯିବା ଚନ୍ଦ୍ର ସମ-
ହଜି ଯାଏ ଜୀବନ ର ବସନ୍ତର ସୁଷମା ।
ବିରହରେ ଆଶାନଦୀ ତୀରେ, ଝୁରିହୁଏ ପରାଣ ଚକୋରୀ ।।
ମଳୟର ପରଶ ବିହୀନେ,
କୁହେଳିକା ବାରି ଅନ୍ତରାଳେ ।
ବିନୟର ଲଳିତ ଝଂକାରେ-
ଦରଦୀ କବିତା ସ୍ୱରେ ।
ମିଳନର ମହାମନ୍ତ ଗାଇଉଠେ ଗୁମରି ଗୁମରି ।।
ଫିକା ପଡ଼ିଗଲେ ପ୍ରେମ-
ଜଞ୍ଜାଳର ଜାଳ ଛନ୍ଦି ହେଲେ ।

ମରୁପଥେ ମଉଳିରେ ଯଉବନ ଜବାପୁଷ୍ପ ଅବା ।
ଉକୁଟୀ ଉଠିଲା ବେଳେ ତୃଷ୍ଣାର ଆଭାଷ-
ଲିଭି ଲିଭି ଯାଏ ସ୍ୱପ୍ନ ସବୁ ।
ମମତ୍ୱର ଦୂର ଦିଗ୍‌ବଳୟେ ଟୁକୁରା କାଗଜ ପରି,
ଜୀବନକୁ ଖିନ୍ ଭିନ୍ କରି-
ଅତୀତର ଅନୁଭତି କହେ ସ୍ମୃତି ସୁମରି ସୁମରି ॥
ଯେବେ ସେ କରୁଣ ଶବ୍ଦ-
[illegible]ୋଡ଼ି [illegible]ଏ ବୟସର ଶିଖରୀ ଶିଖରେ,
ବୈଶାଖୀର ମୌସୁମୀ ସନ୍ତାପ ସମୀରେ-
ଅବିଶ୍ରାନ୍ତ ଝଡ଼ ଝଞ୍ଜା ସହ ।
ନାଚି ନାଚି ଥକି ଯାଏ ଅବଶ ଅଙ୍ଗରେ-
"କ୍ଳାନ୍ତ, କବି, ମାନସ, ମୟୂରୀ" ॥



# କବିତା ବନିତା ଲତା

ଯୁଗାନ୍ତରୁ ଋଷି ଯଥା ଦେଇଛନ୍ତି ବାର୍ତ୍ତା
ଆଶ୍ରୟ ଲୋନେ କବିତା ବନିତା ଓ ଲତା
କବି ଓ କବିତା ମିଳି ପର୍ଣ୍ଣ କୁଟୀରରେ
ଗାଉଥାନ୍ତି ଛନ୍ଦ ତୋଳି କାବ୍ୟମୟ ସ୍ୱରେ ।।
ଯେ ସ୍ୱର ସମ୍ଭବିଥିଲା ବାଲ୍ମିକୀ କଣ୍ଠରେ
ରାମାୟଣ ସୃଷ୍ଟି ହେଲା ଧରିତ୍ରୀ ପୃଷ୍ଠରେ ।।
ସେ ଛନ୍ଦ ବି ପ୍ରସରିଲା ଅଶୋକ ବନରେ ।।
ଜନକ ଦୁହିତା ସୀତା କରୁଣ ସ୍ୱନରେ ।।
ଅନସୂୟା ଦମୟନ୍ତୀ ସାବିତ୍ରୀ କାହାଣୀ ।।
ଶବ୍ଦ ଛନ୍ଦ କହେ ଚିନ୍ତି କବିତା କଲ୍ୟାଣୀ ।
ପୁନଶ୍ଚ ଯେ ସ୍ୱର ପାର୍ଥ ତୃପ୍ତ ହେଲା ଶୁଣି
ଶ୍ରୀକୃଷ୍ଣ ମୁଖ ନିଃସୃତ ଗୀତାମୃତ ବାଣୀ ।।
ପୂର୍ବେ କୁରୁସଭା ସ୍ଥିତା ପାଣ୍ଡବ ରମଣୀ ।
କାତର କଣ୍ଠେ ବିବସ୍ତ୍ରା କୃଷ୍ଣାର ଦୟିନୀ ।।
ସେ ସର୍ବ ନିଃସ୍ୱ ପରାଣେ ବିଶ୍ୱ ମୂଲ୍ୟାୟନ
ଅଦ୍ୟାବଧି ସସମ୍ମାନେ ହୁଏ ଉଚ୍ଚାରଣ ।।
ଅପରନ୍ତୁ ଶରାଘାତେ ପୀଡ଼ିତ ବିହଗ
ଦର୍ଶନେ ଗୌତମଚିତ୍ତେ ସୃଜିଲା ଆବେଗ ।

□□□

ଅହ ରହ ଶ୍ରୁତି ଜାତେ ବୈରାଗ୍ୟ ସଂଖୋଳି
ରାଜ ଭୋଗ ତ୍ୟାଗ କୃତେ ହେଲେ ବନଚାରୀ ।।
ବୁଦ୍ଧଂ ଶରଣ ଗଚ୍ଛାମି ସଂଘ ଆଶ୍ରେ କରି
ଯୁଗପଦ୍ ସମ୍ଭବାମି କବିତା ସୁନ୍ଦରୀ ।।
ଅଦ୍ୟସମାଜ ଶୃଙ୍ଖଳା ଅବକ୍ଷୟ ସ୍ମରି
ଧର୍ଷିତାଯୁଗ ଅବଳା, ନିରାଶ୍ରୟା ନାରୀ ।।
ଭ୍ରଷ୍ଟାଚାର କବଳିତ ଧରିତ୍ରୀ ବିକଳେ
ଶାନ୍ତି ମୈତ୍ରୀ ପରାହତ ସର୍ବତ୍ର ଉତ୍କଳେ ।।
ମହାବାତ୍ୟା ତରୁଲତା ବିନାଶିଲା ହେଲେ
ରକ୍ଷକ ବିଶ୍ୱ ନିୟନ୍ତା ଥାଉଁ ନୀଳାଚଳେ ।।

□□□

# ଚଳାପଥର ପଟୁଆର

ରାସ୍ତା କଡ଼ ଗଛ ଡାଳରେ---
ହଳଦୀ ବସନ୍ତ ଗାଉଛି, ମନ ଫୁଲାଣିଆଁ ଗୀତ ।
ସୂଚେଇ ଦେଉଛି ଆସନ୍ନ ଭବିଷ୍ୟତ ର ସୁ ସଂକେତ ।।
ପ୍ରାଚୀର ପତ୍ର ମଡ଼ା ଯାଇଛି. ତୋରଣ ସଜା ଚାଲିଛି,
ଦୂରରୁ ପଟୁଆର ର ହୋ ହଲ୍ଲା ଶୁଭୁଛି,
ପଥିକମାନେ ଭାବୁଛନ୍ତି, କେହି ଜଣେ ଆସୁଛନ୍ତି
ଯାହାଙ୍କୁ ସମସ୍ତେ ମାପି ଚାଲିଛନ୍ତି---
ନିଜ ନିଜର ଭାବନାର ମାପ କାଠିରେ ।।
ରାସ୍ତା ସେପଟ ଗଳିରୁ, କ୍ରନ୍ଦନର ରୋଳ ଶୁଭୁଛି
କରୁଣ କାତର କୋଳାହଳ ଭେଦ କରୁଛି-
ଉଦାସ ଝଂକାର, "ରାମ୍‌ନାମ୍ ସତ୍ୟ ହେ"
ପଟୁଆର ଚାଲିଛି ଚଳାପଥରେ-
ସମସ୍ତେ ଭାବୁଛନ୍ତି ଜଣେ କିଏ ବିଦାୟ ନେଉଛି ।
ଯାହାକୁ ତାର ଆତ୍ମୀୟ ପରିବାର
ବାଟେଇ ଦେଉଛନ୍ତି ପର ପାରିକୁ ।।
ରାସ୍ତା ଛକରେ ଜଣେ ଇଂଗିତ ଦେଉଛି ।
ରୋକି ଦେଉଛି ପଟୁଆରକୁ ।
ହଳଦୀ ବସନ୍ତ ଠାରୁ ଆହୁରି ସତର୍କ-
ନିୟତି ନିୟମ ର, ଆଇନ୍ ଅଦାଲତର-
ଅନିଷ୍ଟ ସଂପର୍କ, ଅଭିଜ୍ଞ ବିବେକର ।
ଅବଜ୍ଞା କରିବାକୁ ଜୁ ନାହିଁ କାହାର ।।

ନିତିଦିନିଆଁ ଦୁନିଆଁ ଏବଂ-
ରଂଗୀନ ଜୀବନର ଚଲାପଥରେ,
ଅନୁଭୂତି ସାଉଣ୍ଟି ଚାଲିଛନ୍ତି, କିଏ କେତେ ପ୍ରକାରର ।
କେହି ବି ବାଣ୍ଟି ଦେଉଛନ୍ତି ଜୀବନର ସବୁକିଛି,
ଯାହାକୁ ଦିନେ ଭାବିଥିଲେ ଅତି ଆପଣାରେ ।।
ଚଲାପଥେ ଦେଖି ଚାଲିଛି, ଚିହ୍ନା ଅଚିହ୍ନା ସଭିଙ୍କି ।
ଯେଉଁମାନଙ୍କୁ ନେଇ ତାର ସଂସାର । ଭାଇ-ଆଖୁଅରେ ।
ଯେଉଁମାନେ ତାର ସାଥି ଏବଂ ସହଚର ।
ନିଜେ ଚାଲିବା ସହ ସେ ଚଲାଇ ପାରିଛି ଆପଣାର ପଟୁଆର ।
ଶାସକ ଠାରୁ ଶୋଷିତ ପର୍ଯ୍ୟନ୍ତ, ସମସ୍ତେ ଚିହ୍ନିଛନ୍ତି ତାକୁ ।
ସେ ବି ବୁଝିଛି ସବୁରି ହସ-କାନ୍ଦ ଏବଂ ଚାଲ୍ ଚୁଆଚୋରୀକୁ ।
କାରଣ ସମସ୍ତେ ତାର ପଟୁଆର ।



# ଅବୁଝା ଡାଏରୀ

ଗଛରୁ ପତ୍ର ସବୁ ଝଡ଼ିଲେ-
ସମୟର ଗାଡ଼ିଟା କଳାଧୂଆଁ ଛାଡ଼ିଲେ,
ମୁଁ ଭାବେ ତୁମେ ଏବେ ଆସିବ
ଜୀବନଟା ମନ ଖୋଲି ହସିବ ।।
ଡାଆଣିଆଁ ଖରାବେଳ ଗଡ଼ିଲେ
ଛାଇ ସବୁ ଲମ୍ବି ଲମ୍ବି ବଢ଼ିଲେ
ଆକାଶଟା ରଂଗ ସିନା ଦିଶିବ ।।
ପକ୍ଷୀସବୁ ବସା ମୁହାଁ ଉଡ଼ିଲେ
ସଞ୍ଜ ଫୁଟା ଫୁଲ ଗୁଡ଼ା ଝଡ଼ିଲେ
ତୁମ ଗତିଛନ୍ଦ ସହ ମିଶିବ ।।
ସାଗରର ଢେଉ ତଳେ ବୁଡ଼ିଲେ
ବିବେକର ବୁଦ୍ଧି ଯଦି ହୁଡ଼ିଲେ
ସୂର୍ଯ୍ୟଟା ମେଘତଳେ ଲୁଚିବ
ଦିଗ ସବୁ ଅନ୍ଧାରିଆ ଦିଶିବ ।।
ପ୍ରେମ ପତ୍ର ସବୁଟକ ପଢ଼ିଲେ,
ମମତାର ଲୁହ ଜହ୍ନୁ ଗଡ଼ିଲେ
ମୋ ଆଖିର ଚଷମାଟା ନଥିବ
ଅଦିନିଆଁ ଚିଠାଟା ଆସିବ ।।
ମୋ ଆଖିରୁ ପରଳ ଟା କାଢ଼ିଲେ
ଆଜି ନିଜ ବୁଝାବଣା ଛିଡ଼ିଲେ ।।

ମୁଁ ବୁଝୁଛି ଭଲ ବେଳ ଆସିବ
କାହା ସାଥେ କିଏ ଅବ' ମିଶିବ ।।
ଅଭିମାନ ପଣ ସବୁ ପୋଡ଼ିଲେ
କିଏ ସିନା ସାଇ ଭାଇ ଲୋଡ଼ିଲେ
ସମାଜଟା ସୁରୁଖୁରୁ ଚାଲିବ
ବିଚାରର ପରଓ୍ୱାନା ଝୁଲିବ ।।
ଲଗାମର ଦଉଡ଼ି କି ଭିଡ଼ିଲେ
ଘୋଡ଼ା ମୁହଁ ତୋବଡ଼ାଟା ଜାଡ଼ିଲେ
ଏ ଜାତିର ନନ୍ଦିଘୋଷ ଗଡ଼ିବ
ବେପାରୀ ଟା ମୁହଁ ସିନା ମୋଡ଼ିବ ।।
କଳପନା ନଈ ସବୁ ବଢ଼ିଲେ
ସପନର ସୈନ୍ୟ ମାନେ ଲଢ଼ିଲେ
ତୁମେ କ'ଣ ଏବେ କଥା ବୁଝିବ
ବୁଝିଲେ ବି କେତେ ମନେ ରଖିବ ।।

□□□

# ସ୍ୱାଭିମାନ

ଦୁଇପତର ରୁ ତୁଳସୀ ମହକେ, ବିଛୁଆତୀ ଗଲୁ ଯୁଗାନ୍ତର
ଓଡ଼ିଆ ଅଭାବ ଓଡ଼ିଶା ମୂଳକେ, ବଢ଼ିଛି କେବଳ ଭ୍ରଷ୍ଟାଚାର ।।
ଦୂର ଅତୀତର ଇତିହାସ କହେ, ଓଡ଼ିଆ ସାହିତ୍ୟ ସମାଚାର ।
ଥିଲେ ମଧୁବାବୁ, ଗୋପବନ୍ଧୁ ସାଥେ, ଜାତି ପ୍ରାଣ ବ୍ରଜ ସୁନ୍ଦର ।
ବାଗ୍ମୀ ବିଶ୍ୱନାଥ, ବିଚ୍ଛନ୍ଦଚରଣ, ବୀରକିଶୋର ଓ ବିଦ୍ୟାଧର-
ବିପିନ୍ ବିହାରୀ କୁନ୍ତଳା କୁମାରୀ, ଗୋଦାବରୀଶ ଓ ହରିହର ।।
''ମୁକୁର'' ପତ୍ରିକା ଉପନ୍ୟାସ ମାଳା, ଟେକ ରଖିଥିଲା ଏ ଜାତିର
ଆଜି ସ୍ୱାଧୀନତା ପଚାଶ ବରଷେ, ଭାଷା ଜାତୀୟତା ଛାରଖାର ।।
କେନ୍ଦ୍ରରେ ଓଡ଼ିଆ ନେତା ମନ୍ତ୍ରୀ ହେଲେ ଇତିଅବସରେ ବାରବାର ।
ପଛୁଆ ଜାତିଟା ବାଟ ମାରଣାର ଶିକାର ହୁଏ ଯା ଚିରକାଳ ।।
ଓଡ଼ିଆ ସାହିତ୍ୟ ରଥୀ ମହାରଥୀ ଲଭି ଜ୍ଞାନପୀଠ ପୁରସ୍କାର
ଆପଣାର ସ୍ୱାର୍ଥ ପ୍ରଥମେ ଦେଖନ୍ତି ଅନ୍ୟକୁ ଦେଖିବା ବହୁଦୂର ।।
ବିଚ୍ଛିନ୍ନ ଅଞ୍ଚଳ ଓଡ଼ିଆ ପିଲାଏ ପାଠ୍ୟ ପୁସ୍ତକରେ ହରବର
ଚଉବନ ବର୍ଷେ ହେଲାନି ଏ ଯାଏ ସେମାନଙ୍କ ଲାଗି ପ୍ରତିକାର ।।
କୁମ୍ଭୀର କାନ୍ଦଣା ସାର ହଉ, ସିନା ସୁରକ୍ଷା ନୋହିଲା ସାହିତ୍ୟର
ପ୍ରାଥମିକ ଶିକ୍ଷା ବଜେଟ କମିଲା ମଧ୍ୟାହ୍ନ ଭୋଜନ ସମ୍ବଳର ।।
ଯୁକ୍ତ +୨ ତିନି ଶିକ୍ଷାୟତନରେ ଓଡ଼ିଆ ପାଠର ହତାଦର,
ଓଡ଼ିଆ ପଢ଼ିଲେ ଚାକିରି ମିଳେନା, ସବୁ ପିଲାଙ୍କର ଏକାସ୍ୱର
ସରକାରୀ ଭାବେ ମାନ୍ୟତା ଲଭିଛି ନାମକୁ ମାତ୍ର ଯା ଭାଷାନ୍ତର ।
ସଚିବାଳୟରେ କଳଙ୍କି ଲାଗୁଛି ଓଡ଼ିଆ ଟାଇପ୍ ରାଇଟର ।।
ଏକାଡ଼େମୀ ସିନା ସ୍ଥାପିତ ହୋଇଛି ଓଡ଼ିଆ ସାହିତ୍ୟ ସମାଜର
ମାତ୍ର ସଭାପତି ଆସନ ପାଇଁକି କ୍ଷମତା କନ୍ଦଳ ନିରନ୍ତର ।।
କବି ରବି ସିଂହ କରନ୍ତି ଘୋଷଣା ରଖ ମାତୃଭାଷା ଶିଷ୍ଟାଚାର
'ଚଟୁ ଆମିଷ ଓ ବେଣ୍ଟ ନିରାମିଷ'' ଚଳିବନି ଏଇ ସ୍ୱେଚ୍ଛାଚାର ।।
ଖାରବେଳ ବର୍ଷ ପାଳନ କରନ୍ତି ଏବେ ତ ଓଡ଼ିଶା ସରକାର
ଓଡ଼ିଆ ଜାତିର ନିଜତ୍ୱ ହଜିଛି, ଖୋଜି ଆଣିବେକି ''ଗିରିଧର''

□□□

# ଭଉଣୀଟିଏ ଥିଲା ଆଉ ସେ ନାହିଁ

ଦୁଇ ହଜାର ମସିହା ଅଗଷ୍ଟ ପହିଲା
ଘଟ ଛାଡ଼ି ଦେଇ ଯାହା ପରଲୋକେ ଗଲା
ବର୍ଷ ବର୍ଷ ଧରି ରୋଗ ସଙ୍ଗେ ଲଢୁଥିଲା ।
ଆଜି ବୋଧହୁଏ ଯମ ଚିତା ପଟ ନେଲା ।।
ବଡ଼ ଭଉଣୀ ସେ ଥିଲା ଏବେ ନାହିଁ
ଯେ ଯେତେ ଖୋଜିଲେ ଭଲା ମିଳିବ ସେ କାହିଁ ?
ନିକଟ ଆତ୍ମୀୟ ମୋର ତା ଭଳି କେ ହେବ
ମୋ ଭଲ ମନ୍ଦ ଖବର ମନେ ରଖିଥିବ ।।
କି ଯଶ ଗାଇବି ତାର ସେ ତ ବଡ଼ ଦେଇ
ପିଲା ବେଳୁ ମମତାରେ ଆଣିଛି ଚଳେଇ ।।
ଜମିରୁ ସେ ପାଉଥିଲା ଆଂଶିକ ଫସଲ
ପଲାଏ ପାଠ ପଢ଼ିଲେ ହେବାରୁ ଡାଗର
ସଭିଙ୍କୁ ମଣିଷ କଲା ନିଜ ପେଟ କାଟି
କିନ୍ତୁ ସେ ବିକି ନ ଥିଲା ପଇଡୁକ ମାଟି ।।
ଈଶ୍ୱର କରୁଣା କଲେ ପିଲେ ବଡ଼ ହେଲେ
ନିଜ ପାଦେ ଠିଆ ହେଲେ ଧନ ଅରଜିଲେ ।।
ଧନ ପ୍ରେମୀ ନୁହେଁ ସେ ତ ଜନ ପ୍ରେମୀଟିଏ ।
ଷାଠିଏ ବର୍ଷରେ ମୁଁ ତା ପାଶେ ପିଲାଟିଏ ।।
ଜନ୍ମ-ମରଣର ଖେଳ ଏ ସାରା ସଂସାର
ଜଗତ ମଞ୍ଚରେ ମେଳ ସର୍ବେ କଳାକାର ।।
କାଳବଳେ ଚଳିଯାନ୍ତି ନିଶ୍ଚେ ସ୍ୱର୍ଗ ବାସେ
ଯେ ଯାହାର ଅଭିନୟ କରି ରଙ୍ଗମଞ୍ଚେ
ବିଶ୍ୱକରତାଙ୍କ ପାଶେ କରୁଛି ମିନତି
ମୋ ଦେଇର ଆତ୍ମାକୁ ସେ ଦିଅନ୍ତି ସଦ୍‌ଗତି ।।



# ବାସ୍ତୁହରା ର ବିଳାପ

ଅନେକ ପଥରେ ପଥିକ ସାଜିଛି-
ମାଗିଛି ମମତା ଭିକ ।
ଅନ୍ତରେ ନିରାଶା ଆଘାତ ପାଇଛି-
ଏଇ ମୋ ଜୀବନ ଯାକ ।।
ବାସଗୃହ ଯାହା ଆଦରି ନେଇଛି-
ଶ୍ମଶାନ ତା'ଠାରୁ ଉତ୍ତମ ସହସ୍ର ଗୁଣେ ।।
ମୋ ମନ ଆକାଶେ ଅନ୍ଧାର ଘୋଟିଛି
ସୁଖର ଚନ୍ଦ୍ରମା କେବେ ବି ଉଇଁନି ଖଣେ ।
ତିରସ୍କାର ବିନା ପୁରସ୍କାର କେହି-
ଦିନେ ବି ଦେଇନି ଯାଚି ।
ଅଯାଚିତ ଭାବେ ପରିଚୟ ଦେଇ-
ଦୁନିଆ ଦୁଆରୁ ଅପବାଦ ଅରଜିଛି ।।
ଜୀବନ ସଉଦା ରହିଗଲା ଅଧା-
ସଂସାର ବଜାରେ ଅଭିମାନେ ବୁଲି ବୁଲି
କାହା ମନେ କେବେ ଦେଇନି ତ ବାଧା
ତଥାପି ଭର୍ତ୍ସନା ଯାତନା ସହିଛି ଖାଲି ।
ଦରଦୀ ଅନ୍ତର ବିଳପି ଉଠିଛି-
ସନ୍ଧ୍ୟାର ବୟସେ ସାଥିଟିଏ ଖୋଜିବାରେ ।
ଅବଶୋଷ ତକ ମଥାରେ ବହିଛି-

□□□

ବଇଶାଖୀ ପଥେ ଝଡ଼ ଝଞ୍ଜା ଘୋଟି ବାରେ ।।
ଆପଣା ନିଶାରେ ଏକାକୀ ଚାଲିଛି
ତୃଷ୍ଣା ଅବଶ ସନ୍ତାପ ନିଆଁରେ ଜଳି ।
ମରଣ ସାଥିରେ ସଂଗ୍ରାମ କରିଛି-
ଦୁଃଖ ଅନଟନ ପାଦରେ ଦେଇଛି ଦଳି ।।
ପ୍ରତୀଚୀ ଗଗନେ ଡୁବି ଗଲେ ରବି-
ବିଷା ଘୃଣାରେ ଦେଖାନାହ ପଛଘୁଞ୍ଚା ।
ସମ୍ମାନ ଲିପ୍ସାରେ ଖୋଜିନି ପଦବୀ-
ଲୋତକ ଝରାଇ ବୁଝିନି ଈଶ୍ୱର ଇଚ୍ଛା ।
ଆହା ପଦ ମୋତେ କେହି ବି କହିନି-
ଆଜୀବନ ସିନା ଖଟିଛି ବେଗାରି ବେଠି ।
ବାଣ୍ଡୁହରା ମୁଁ କେବେ ବି ଚାହିଁନି-
କାମନା ବାସନା ମଧ୍ୟରେ ଚିର ଶାନ୍ତି ।।

□□□

# ଖରା

ଖରା ଆସିଗଲା ଖରା, ଜଳିବ ଲୋ ଦରମରା ।
ଶୋଷ ଚାହିଁଲାଣି ଥଣ୍ଡା ସରବତ-
ଭୋକ ଚାହିଁଲାଣି ଖାଇବାକୁ ବହିବରା ।।
ତାତି ପବନରେ ମଥା ଘୂରିଲାଣି
ନଅଟା ନ ବାଜୁ ବାଲି ତାତିଲାଣି
ଖରା ମାଡ଼ିଲାଣି ନିଆଁ ଜଳିଲାଣି-
ତା ହତାଶାରେ ନାଚିବେ ଦୁନିଆ ସରା ।।
ବାଟରେ ବାଟୋଇ ଥକି ପଡ଼ିଲେଣି
ଆଶ୍ରା ନେବାକୁ ଛାଇ ଖୋଜିଲେଣି
ଗଛଟିଏ କାହିଁ ରାସ୍ତାରେ ନାହିଁ-
ମହାବାତ୍ୟା ଯା କରିଗଲା ସର୍ବହରା ।।
ଝାଞ୍ଜି ବୈଶାଖୀ ଅଂଶୁଘାତ ସହି
ଇଚ୍ଛା ହୁଏ ନାହିଁ ଯିବା ପାଇଁ କାହିଁ
ଓଡ଼ିଶା ରାଇଜେ ପାଣି ମିଳେ ନାହିଁ-
କୂଅ ପାଖେ ଗଦା ଶୁଖିଲା ମାଠିଆ ଗରା ।।
କାହାକୁ କହିଲେ ଶୁଣିବ-ବା କିଏ ?
ପ୍ରାଣ ବିକଳରେ ବ୍ୟସ୍ତ ସଭିଏଁ ।
ଜୀବନରେ ମାନ ସରି ସରି ଯାଏ-
ଶରଧା ସେନେହ ମମତା ନ ଦିଏ ଧରା ।।

ସମାଜରେ ଶାନ୍ତି ଶୃଙ୍ଖଳା ନାହିଁ
ପାଲଟି ଗଲେଣି ସର୍ବେ ଆତତାୟୀ
ଢୋକେ ପିଇ ଦଣ୍ଡେ ବଞ୍ଚିବା ପାଇଁ
ରହା ନାହିଁ ତେଣୁ-
ପ୍ରକୃତିର ଯେ ଧ୍ୱଂସ ତାଣ୍ଡବ ଲୀଳା ।।
ଗଛ ବିନା ନାହିଁ ମଧ୍ୟ କାହାରି
ଜୀବ ଜଗତକୁ ପାରିବ ଉଦ୍ଧାରି
ଗଛର ଯତ୍ନ ନିହାତି ଜରୁରୀ ।
ନଚେତ୍ ଆସିବ ମରଣ ଡାକରା
ଅକାଳ ବାର୍ଦ୍ଧକ୍ୟ ଜରା ।।
ଖରା ଆସିଗଲା ଖରା-

□□□

# ନବବର୍ଷର ବିଶ୍ୱ ବିଚିତ୍ର

ବିଶ୍ୱର ବୁକୁରେ ସତ୍ୟର ସ୍ୱର ତୋଳି
ଆସିଛି ଅଧୀରେ ନବବର୍ଷ ଝୁଲି ଝୁଲି ।
ଶୁଭକାମନାର ଆନନ୍ଦ ଉଲ୍ଲାସ ନେଇ
ସମ୍ଭାବନାର ସ୍ୱାଗତିକା ଗାଇ ଗାଇ
ଅଭିନନ୍ଦନ ସ୍ୱୀକୃତି ପ୍ରଦାନ ଅଭିଳାଷ ଯାଏ ଖେଳି ।୧। ବିଶ୍ୱ ବୁକୁରେ-
ଦିବ୍ୟ ଚେତନା ଆଣିଛି ଏ ନବବର୍ଷ
କୋଟି ମଣିଷର ଅଧରେ ଉକୁଟେ ହସ
ଡିସେମ୍ବର ଶେଷ ରାତିର ପରଶ-
ଦେଇଛି ପୁଲକ ବୋଳି ।୨। ବିଶ୍ୱ ବୁକୁରେ-
ଭଲ ପାଇବାର ଫୁଲ ତୋଡ଼ା ହାତେ ଧରି
ଫ୍ରାନ୍ସ ବାସିନ୍ଦା ପରସ୍ପର କୋଳାକୋଳି ।
ଗ୍ରୀସ୍ ଦେଶରେ ଏଲିଭ୍ ତେଲରେ ଦୀପାଳି ଉଠିଛି ଜଳି ।୩।
ଇଟାଲୀରେ ଜଳ କୂପ ପାଶେ ହୋଇ ମେଳି
ପ୍ରତି ପ୍ରତ୍ୟେକକୁ ଚୁମ୍ବନ ଦାନ କରି
ନବ ବରଷର ସ୍ନେହ ମମତାର ବିଭୋରେ ଉଠନ୍ତି ଫୁଲି ।୪।
ମସିଡ଼ୋନିଆରେ ପହିଲି ପରସ ସ୍ମରି
ବୁଲ୍ଗେରି ଆରେ ବାଜିଛି ବୀର କାହାଳୀ
ଏ ଦୁଇ ଦେଶରେ ମକା-ଚଣା ହାରେ
ଆନନ୍ଦେ ଖେଳନ୍ତି ହୋରୀ ।୫।
ରଷ୍ କୃଷକର ଗହମ କେଣ୍ଡାର ତୋଡ଼ା
ଭିତରେ ସୁସ୍ୱାଦୁ ଫଳ ରଖି ହୁଏ ଭିଡ଼ା
ଶିଳ୍ପ ବିଜ୍ଞାନୀ, କଳାର ସନ୍ଧାନୀ-
ଭୁଞ୍ଜନ୍ତି ସେ ଫଳ ଖୋଲି ।୬।
ସ୍କଟ୍‌ଲ୍ୟାଣ୍ଡ ବାସୀ ସଂଗୀତେ କହନ୍ତି ଭାଷା
ଡିସେମ୍ବର ଶେଷ ଶୀତ ପାହାନ୍ତି ଉଷା
ଝଙ୍କାର ତୋଳନ୍ତି ସତ୍ୟ ସଂହତି-
ସଭ୍ୟତାକୁ ଅନୁସରୀ ।୭।

ଜାପାନୀ କରନ୍ତି ତିନିଦିନ ମହୋତ୍ସବ
ଝାଡୁ-ଦଉଡ଼ିରେ ଶୁଭ ସଂକେତ ଠାବ
ପୁରୁଣା ବର୍ଷ ଆବର୍ଜନା ଶେଷ-
ନୂଆକୁ ସ୍ୱାଗତ କରି ।୮।
ହଲାଣ୍ଡ ମାଟିରେ ନବବର୍ଷ ପାଦସ୍ପର୍ଶେ
ଚର୍ଚ୍ଚରେ ବସି ସଂଖୋଳନ୍ତି ମନହର୍ଷେ
ଲେଖକ ଅର୍ଚ୍ଚନା ଧର୍ମ ଧାରଣା-
ଖ୍ରୀଷ୍ଟ ସୁମରଣା କରି ।୯।
ପାର୍ଟି ପିକ୍‌ନିକ୍ ନାଇଟ୍ କ୍ଲବ୍‌ରେ ମିଳି
ଆମେରିକାବାସୀ ପ୍ରେମାନନ୍ଦେ କୋଳାକୋଳି ।
ନବବରଷର ଆନନ୍ଦ ମୁଖର ସ୍ୱାଗତିକା ବୋଲି ବୋଲି ।୧୦।
ରଂଗ ବେରଙ୍ଗର ଆଲୋକେ ଜଳାଇ ଜ୍ୟୋତି,
ଲଣ୍ଡନ, ସହରେ ନାଚ ଗୀତେ ପାହେ ରାତି ।
ସାଜ ସଜା ଆଉ ସାଇରନ୍ ସ୍ୱରେ ନବବର୍ଷ ଖେଳେ ହୋରୀ ।୧୧।
ବର୍ମାରେ ଦୁବ ଜଳରେ ପୂଜନ୍ତି ବୁଦ୍ଧ
ସେ ଜଳ ସିଞ୍ଚନେ ସଭିଏଁ ହୁଅନ୍ତି ଶୁଦ୍ଧ ।
ନୂତନ ଅତିଥି ସ୍ୱାଗତ କରନ୍ତି, ଉକ୍ତିରେ ଅନ୍ତର ଖୋଲି ।।୧୨।।
ପଶ୍ଚିମ ଜର୍ମାନୀ ଜଳରେ ବୁଡ଼ାନ୍ତି ମୁଦ୍ରା
ଭବିଷ୍ୟତ ବାଣୀ ଶ୍ରବଣେ ତେଜନ୍ତି ନିଦ୍ରା
ଭିନ୍ନ ମୂଲ୍ୟର ମାଗେ ଉପହାର; ପିତା ପାଶେ ଅଲିଅଳି ।।୧୩।।
ଦକ୍ଷିଣ ଆଫ୍ରିକା ଧରଣୀରେ ଫୁଟେ ଫୁଲ
କୁଲୁ ସଂପ୍ରଦାୟ ନବ ବର୍ଷେ ବାହାଘର
ଦରର ବୀରତ୍ୱ, ଷଣ୍ଢ ଯୁଦ୍ଧେରତ, ଆନନ୍ଦ ଉତ୍ସବ କେଳି ।।୧୪।।
ଦେଶକେ ଫରକ ନୂତନ ବରଷ ଗାଡ଼ି
ଭାବନା ବିଭୋର ବିଶ୍ୱ ମାନବ ଜାତି
ନୂତନ ସଂହତି ସମୂହ ସ୍ୱୀକୃତି ସ୍ୱାଗତ ମଶାଲ ଜାଳି ।।୧୫।।

□□□

# ଝଞ୍ଜା

ଏବେ ତ ଝଂଜାର ଯୁଗ ଚାଲିଛି ।
ବ୍ୟକ୍ତି, ପରିବାର, ଜାତି, ଦେଶ ଓ ବିଶ୍ୱ
ସବୁକିଛି ଝଂଜାର କବଳରେ କବଳିତ,
ବୋଧହୁଏ ଏମିତି କେହି ନାହିଁ ଯିଏ କି-
ସାଂପ୍ରତିକୀ ଝଂଜାକୁ ସାମ୍ନା କରି ବଞ୍ଚିବ ।
ମୋ ଜୀବନର ସତ୍ତାଲୋପ କରିବାକୁ,
ମୋ ପୁରୁଷକାର ଏବଂ ମୁରବି ପଣିଆକୁ,
ଶକ୍ତ ଧକ୍କା ଦେବା ଉଦ୍ଦେଶ୍ୟ ନେଇ
ସେମାନେ ପାଲଟି ଯାଇଛନ୍ତି ଝଞ୍ଜା ।
ଦିଗନ୍ତ ବିସ୍ତାରୀ ସେମାନଙ୍କର ପଂଝା ।।
ଅତୀତରେ ସେମାନେ ମୋ ସହ କଥା ହେଲ ବେଳେ
ବନାନୀର ବୃକ୍ଷଲତା ଭଳି ମଥା ହଲେଇ-
ବିଭୋର ହେଉଥିଲା ବେଳେ,
ମୁଁ ସେମାନଙ୍କ ଭବିଷ୍ୟତ ଚିନ୍ତାରେ ମଜ୍ଜି ଯାଉଥିଲି ।
ସେମାନଙ୍କ ହସ ସହ ସ୍ୱର ମିଳାଇ ନାଚି ପାରୁଥିଲି ।
ପାରୁ ଥିଲି ବି ସେମାନଙ୍କ ମଙ୍ଗଳ କାମନା କରି,
କିନ୍ତୁ ଯେ କଣ ହେଲା ? କେମିତି ମୋ ସଂପର୍କର-
ଡୋରି ପୁରୁଣା ନହେଉଣୁ, ଅକସ୍ମାତ୍ ଛିଡ଼ିଗଲା ?

□□□

ଏହା ନିଶ୍ଚୟ ସେହି ଝଂଜାର କରାମତି ॥
ସେମାନେ ଏବେ ସୁବିଧା ପାଇଲେ-
ମୋତେ ଧ୍ୱଂସ ମୁଖକୁ ଠେଲି ଦେବା ପାଇଁ, ଏବଂ
ଟୁକୁରା କରି, କାଟି ଫିଙ୍ଗି ଦେବାପାଇଁ,
ସେମାନଙ୍କ ଉଦ୍ଦେଶ୍ୟ ଜାରୀ କଲେଣି ।
ମୋର ସୁଜନତାକୁ-
ଚୋରକରି ଛଡ଼େଇ ନେବାକୁ ମଧ୍ୟ,
ଆଲୋଚନା କଲେଣି ।
ଏଣିକି ମିଳାମିଶା ବା ସ୍ୱାର୍ଥର ପ୍ରଶ୍ନ ନାହିଁ ।
ଝଂଜା ସେମାନଙ୍କୁ ମୋଠାରୁ ଦୂରେ ନେଇଛି ।
ମୋତେ ଅସହାୟ ଦେଖି,
ସେମାନେ ମହାକାଳର ରୂପଗ୍ରହଣ କଲେଣି ।
ତଥାପି ମୁଁ ବଞ୍ଚିବାର ଅଭିଯାନରେ ଅଟଳ ରହିଛି ;
ଝଂଜା କୁ ସାମ୍ନା କରିବାକୁ ପ୍ରସ୍ତୁତ ଅଛି ॥

□□□

# ସେ ଥିଲା ପ୍ରେମ ଅଭିସାରିଣୀ

ମୁଁ ଭଲ ପାଉଥିଲି ସେହ ନୀଳ ନୟନାକୁ
ଯା ଚାହାଣି କହୁଥିଲା କାହାଣୀ ।
କଅଁଳ ଓଠେ ତାର କୋଇଲିର କୁହୁସ୍ୱର
ଶିଖାଇଥିଲା ବି ପ୍ରୀତି ଚଳଣି ।।
ନାୟିକା ସେ ମୋ, ପ୍ରଥମ ପ୍ରେମର
ପ୍ରେମିକା ଥିଲା ସେ ମୋ ବିରହୀ ଦିନର
ମଲ୍ଲୀମହକରେ ଭରା (ତା) କବରୀରେ ଦିଶୁଥିଲା
କେତେ ସାଥି ମିଳନର ରୋଷଣୀ ।।
ଆସିଥିଲା ମଉସୁମୀ ରାତିରେ
କହିଥିଲା ମନ ଖୋଲି ସାଥିରେ
ତା ଦେହରେ ଥିଲା ଜଡ଼ି, ଭିଜାଭିଜା ନୀଳଶାଢ଼ୀ-
ନଥିଲା ସେ ପ୍ରିୟ ଅଭିମାନିନୀ ।।
ତୋଫା ଜହ୍ନ ଜ୍ୟୋସ୍ନାର ଜୁଆରେ
ବସିଥିଲା ଯଉବନ ନାଆରେ
ହସୁଥିଲା ଚୁପି ଚୁପି, ଚାହୁଁଥିଲା ଛପି ଛପି-
ସେ ଥିଲା ମୋ ପ୍ରେମ ଅଭିସାରିଣୀ ।।
ଯା ଚାହାଣୀ କହୁଥିଲା କାହାଣୀ-

□□□

# ପ୍ରଥମ ଦେଖାରେ........

ଆଖିରେ ଆଖିରେ କଥା କହିବାକୁ-
ମନ ଆଇନାରେ ମମତା ମାଖି ।
ସାଥି କି ପ୍ରୀତିରେ ଇଂଗିତ ଦେବାକୁ-
ତୁମେ ତ ପ୍ରଥମ ପ୍ରେମର ସାକ୍ଷୀ ।।
ପହିଲି ରଙ୍ଗରେ ହେଲା ପରିଚୟ
ରହିଲା ଦୂରରେ ସମାଜର ଭୟ
ଦୋଳି ଖେଳ ବେଳେ ଭାବ ବିନିମୟ
ମିଳନର ମୋହ ଆଣିଲା ଡାକି ।।
ତୁମେ ମୋ ପ୍ରଥମ ପ୍ରେମର ସାକ୍ଷୀ ।।
ତଉଲି ତଉଲି ଭଲ ପାଇବାକୁ
ଭିତରେ ଭିତରେ ସଜେଇ ନିଜକୁ
ଆପଣେଇ ନେଲି ସତରେ ତୁମକୁ-
ରୂପର ମହୁଆ ମାଦକ ଚାଖି ।
ତୁମେ ମୋ ପ୍ରଥମ ପ୍ରେମର ସାକ୍ଷୀ ।।
ନିକଟୁ ନିକଟ ହେଲ ଯେବେ ମୋର
ଗଢ଼ିଲି ଆପଣା ସବୁଜ ସଂସାର
ଯାଚିଲା ଶ୍ରାବଣୀ ସ୍ନେହ ଉପହାର
ନାଚିଲ ମୟୂରୀ ମେଘକୁ ଦେଖି ।।
ତୁମେ ହେଲ ମୋର ଜୀବନ ସାଥୀ ।।

□□□

# କୁହ ସିଏ ହେବ କାହା ପ୍ରେମିକା

କୁଆଁରୀ କନିଆଁର ପଣତକାନି ତଳେ-
କିଏ ସେ ଲୁଚେଇଛି ଗଜମୁକୁତା ।
ସାହସୀ ପଣିଆରେ ସୁନାରୀ ଗଢ଼ିଥିଲେ-
ସତେ କି, ତା ଲାଗି ସୁନାଝୁମୁକା ।।

ରାଇଜସାରା ଆଜି ବସିଛି ହୁରି ହାଟ
ପିନ୍ଧିବା ପାଇଁ ରାଜି ବାହା ବଉଳପାଟ
ବାଜିବ ସାହାନାଇ ସେ କେଉଁ ବର ପାଇଁ
କାହାଁର ଛାତିରେ ତା ଲାଗିଛି ଧକ୍କା ।।

ମଞ୍ଜୁଳା ତିଥିବାର ଅନେକ ଗଲା ଚାଲି
ତା ସାଥି ମିଳନର ଲଗନ ଗଲା ଗଡ଼ି
ମଉଳି ଯାଏ କଳି ବିଳପି ଉଠେ ଅଳି
ମନ ବଗିଚା ଖୋଲି ଜଗାଏ ଶଙ୍କା ।।

ଅଞ୍ଜଳି ଧରି ଥରେ ଏରୁଣ୍ଡି ବନ୍ଧ ଡେଇଁ
ଯିବାକୁ ଇଚ୍ଛା ଥିଲେ ଯାଇତ ହୁଏ ନାହିଁ
ଚକୋରୀ ସମଦଶା ଆଣିଛି ଚନ୍ଦ୍ର ନିଶା-
ଦରଦୀ ପ୍ରିୟ କାହିଁ ? ଦିଏନା ଦେଖା ।।

□□□